ତ୍ରୟୋବିଂଶ
ଭୁବନେଶ୍ୱର ପୁସ୍ତକମେଳା - ୨୦୦୭
ଉପଲକ୍ଷେ

# ଗଳ୍ପ ସଂକଳନ

ସଂପାଦନା : ଯୁଗଳ କିଶୋର ଦତ୍ତ





ମୂଲ୍ୟ - ୫.୦୦ (ପାଞ୍ଚ ଟଙ୍କା ମାତ୍ର)

୨୦୦୭- ତ୍ରୟୋବିଂଶ ଭୁବନେଶ୍ୱର ପୁସ୍ତକମେଳା ଉପଲକ୍ଷେ

# ଗଳ୍ପ ସଂକଳନ

**ଏ ସଂଖ୍ୟାରେ**

ସାତକଡ଼ି ହୋତା
ବିଭୂତି ପଟ୍ଟନାୟକ
ରବି ପଟ୍ଟନାୟକ
ବିଜୟ କୃଷ୍ଣ ମହାନ୍ତି
ଦେବପ୍ରସାଦ ଦାଶ
କ୍ଷୀରୋଦ ଦାସ
ଯୁଗଳ କିଶୋର ଦତ୍ତ



ସମ୍ପାଦନା
ଯୁଗଳ କିଶୋର ଦତ୍ତ

# ମାୟା

## ସାତକଡ଼ି ହୋତା



ପାର୍ବତୀ ହାର ମାନି ନାହିଁ ଏଯାଏ । ଯୁଝୁ ଯାଉଛି ଜୀବନ ସହିତ । ସେ କ'ଣ ଜାଣିଥିଲା ଯେ ବଞ୍ଚିବାର ନାମ ଯନ୍ତ୍ରଣା । ଛୁଆବେଳେ ସାଙ୍ଗମାନଙ୍କ ସହିତ କଣ୍ଢେଇ ଖେଳୁଥିଲା, ଝିଅ ପୁଅ ବାହାଘର ହେଉଥିଲା ଧୁମ୍‌ଧାମ୍‌ରେ । ସେତେବେଳେ ଭାବୁଥିଲା ଯେ କଣ୍ଢେଇ ଖେଳ ପରି ଏ ଜୀବନ-ସଦା ସରସ, ମଧୁର । କିନ୍ତୁ ହଠାତ୍ ଯେ ସବୁ ଓଲଟ ପାଲଟ ହୋଇଯିବ ସେ କ'ଣ ଜାଣିଥିଲା ! ଆଉ ଜାଣିଥିଲେ ବି କ'ଣ କରିଥାନ୍ତା ଯେ... । ଗରିବ ଦୁଃଖୀ ଆଗରୁ ଜାଣି ବି ସାବଧାନ ହୋଇ ପାରନ୍ତି ନାହିଁ । ସାବଧାନ ହେବା ପାଇଁ ସମ୍ବଳ ଦରକାର । ଘରେ ବସି ରହିଲେ ଗରିବର ଚଳିବ କେମିତି ! ସେଥିପାଇଁ ସମୁଦ୍ରର ଝଡ଼ତୋଫାନକୁ ଉପେକ୍ଷା କରି ସେ ଡଙ୍ଗା ନିଏ ମାଛଧରିବା ପାଇଁ, କ୍ରେନ୍‌ରେ କାମ କଲାବେଳେ ଟିକେ ଅସାବଧାନ ହେଲେ ମୃତ୍ୟୁ ସୁନିଶ୍ଚିତ ଜାଣି କ୍ରେନ୍ ଚଳାଏ ପଛୁଆ ନ କରି ଏବଂ ଭୂଗର୍ଭର ଛଅଶହ ଫୁଟତଳୁ କୋଇଲା କାଢ଼ିବାକୁ ଯାଇ ହଠାତ୍ ମାଟି ଧସିଗଲେ ଆଉ ବାହାରିବାର ସମ୍ଭାବନା ନଥିବା ସତ୍ତ୍ୱେ ସେ ସାଇରେନ ବାଜିବାକ୍ଷଣି ପଶେ କୋଇଲାଖଣି ଭିତରେ ।

ସେମିତି ଦିନେ କୋଇଲାଖଣି ଭିତରକୁ ଯାଇଥିଲା ମହେଶ୍ୱର କିନ୍ତୁ ଆଉ ଫେରିଲା ନାହିଁ । ମାଟି ଧସି ପଡ଼ି ରାସ୍ତା ବନ୍ଦ ହୋଇଗଲା । ଭିତରେ ରହିଗଲା ମହେଶ୍ୱର ଆଉ ସାତଜଣଙ୍କ ସହିତ । ଜୀବନର ସୁଆଦ ରଖୁଥିବା ସାତଟି ପରିବାର ହଠାତ୍ ନିଃସହାୟ ହୋଇଗଲେ । କିଏ ବାପ ଘରକୁ ପିଲାଛୁଆ ନେଇ ଚାଲିଗଲା ତ ଆଉ କାହାକୁ ଭାଇ ବା ଭିଣୋଇ ଆସି ନେଇଗଲେ । କିନ୍ତୁ ସେପରି କେହି ନଥିଲେ ପାର୍ବତୀର । ତିନିଦିନ ତିନିରାତି ନିର୍ଜଳା ଉପବାସ ରହି ସବୁ ପ୍ରାର୍ଥନା ବ୍ୟର୍ଥ ହେବା ପରେ ସେ ବାହାରି ଆସିଲା ଘରୁ ନିଜ ଭାଗ୍ୟ ପରୀକ୍ଷା କରିବା ପାଇଁ । ପାଞ୍ଚ ବରଷର ଝିଅ ସେତୁ ତା'ର ଏକମାତ୍ର ସମ୍ବଳ । ସେ ତା'ର ଏକମାତ୍ର ସାଥୀ ଓ ସହାୟ ।

ବାସନ ମାଜୁଥିଲା ଏବଂ ଝିଅ ବିଷୟ ଭାବୁଥିଲା ପାର୍ବତୀ । ସକାଳ ଛଅଟାରେ ବାହାରି ଆସେ । ସେତେବେଳେ ଝିଅ ଶୋଇଥାଏ । ଘଣ୍ଟାକ ମଧ୍ୟରେ ଦାରୋଗା ବାବୁଙ୍କ ଘରକାମ ଶେଷ କରି ସେ ଘରକୁ ବାହୁଡ଼ିଯାଏ । ଝିଅ ଉଠି ସାରିଥାଏ ସେତେବେଳକୁ । କେବେ କେବେ କାନ୍ଦୁଥାଏ ଭୋକରେ । ତା' କାମସାରି ତାକୁ ଖୁଆଇ ପିଆଇ ଆଠଟାବେଳକୁ ଚାଲିଯାଏ ସାହାଣୀ ବାବୁଙ୍କ ଘରକୁ । ବହୁତ ବଡ଼ ପରିବାର । କାମ ବି ବହୁତ । ଘର ସଫା କରି ଓଦା କନାରେ ପୋଛିବା, ବାସନ ମାଜିବା, ଲୁଗା ଧୋଇବା ଓ ଆଉ ଛୋଟ ଛୋଟ କାମ ସାରିବା ବେଳକୁ ବାଆର ବାଜିଯାଏ । ନିଜ ପେଟର ନିଆଁଧାସ ସେତେବେଳକୁ ଚିଆଁ

ଦେଉଥାଏ ପାର୍ବତୀକୁ । ସେ ଘରକୁ ଫେରି ଲୋଟଣୀପାରା ପରି ଲାଗିଯାଏ ନିଜ କାମରେ । ମନେ ମନେ ଗୁମୁରେ । ଗୀତ ଗାଏ । ଭଗବାନଙ୍କୁ ବା ଦଗାଦିଆଙ୍କୁ ଗାଳିମନ୍ଦ ବି କରେ । ସେତିକିବେଳେ ଘରର ପାଇଟି ସାରିନିଏ । ଗାଧୋଇ ପଡ଼ି ତୁଳସୀମୂଳେ ପାଣି ଢ଼ାଳେ ଅଜାଡ଼ି ଦେଇ କହେ – ତମେ ବୁଝ ବା ନ ବୁଝ, ମୁଁ ତମ କଥା ବୁଝିବାରେ ହେଳା କରୁନି । ତମ ଧର୍ମ ତମଠି ।

ସେଇ ଧର୍ମ ପାଳନ କରିବାକୁ ଯାଇ ଏତେ ବିପତ୍ତି। ନ ହେଲେ ଶ୍ୟାମା, ସଂଖୀ, ଲଳିତା ପରି ସେ ବି ଅଏସ କରୁଥାନ୍ତା । ଭୋଗ କରୁଥାନ୍ତା ଯୌବନ ।

ପାର୍ବତୀ ଘର କାମ ଶେଷ କରି ଝିଅକୁ ଖୁଆଇ ନିଜେ ଖାଇବାବେଳକୁ ଦୁଇଟା ବାଜିଯାଏ । ତାପରେ ଚାଲିଯାଏ ସହଦେବର ହୋଟେଲକୁ । ଅନ୍ନପୂର୍ଣ୍ଣା ଭୋଜନାଳୟ । ବାବୁମାନେ ଖାଇସାରି ବାହୁଡ଼ି ଯାଇଥାନ୍ତି ସେତେବେଳକୁ । ସେ ବସି ବସି ବାସନ ମାଜେ, ଟେବୁଲ ଧୁଏ, ଅଇଁଠା ସବୁକୁ ଏକତ୍ର କରି ଅଳିଆ ଗଦାକୁ ଫୋପାଡ଼ି ଦିଏ । ସେତିକିବେଳେ ନିଘା ନଥାଏ ନିଜପ୍ରତି । ଦିନେ ଦିନେ ସହଦେବ ସହିତ ନିରୋଳାରେ ମୁହାଁମୁହିଁ ହୋଇଗଲେ ସେ ତା' ଛାତି ଉପରେ ଆଖି ରଖି ଶରଧାରେ କହେ – ଏଥର ନିଜ କଥା ଟିକେ ବୁଝ ପାର୍ବତୀ । ସମୟ ଚାଲିଯାଉଛି ।

ସମୟ ତା' ଯିବା ବାଟରେ ଯାଉ, ତମେ ଏମିତି ଉହଳ ବିକଳ କାହିଁକି ହଉଛ । ତମର ଘର ଅଛି । ସ୍ତ୍ରୀ ପିଲାପିଲି ଅଛନ୍ତି । ନାଗୁଣୀର ଚେଟ ଖାଇନ କେବେ ?

ସହଦେବ କହେ – ଭଲ କଥା ତୋତେ ନାକରା ଲାଗୁଛି । ମୋର କ'ଣ ଗରଜ ପଡ଼ିଛି ଯେ ... ମୋ ଘରେ କ'ଣ ମାଇପ ନାହିଁ ଯେ....

–ତା' ହେଲେ କାହିଁକି ଲାଗିଛ ମୋ ପଛରେ ? ଖସିପଡିଥିବା ଲୁଗାଟାକୁ ଛାତି ଉପରକୁ ଟାଣି ଦେଇ ଖେଙ୍କାରି ଉଠେ ପାର୍ବତୀ ।

ଏଇ ପୁରୁଷ ଛଡ଼ା କେଉଁ ଧାତୁରେ ଗଢ଼ା କେଜାଣି ସ୍ତ୍ରୀଟିଏ ଦେଖିଲେ ଅଇଁଠା ଭାତ ଦେଖି କୁକୁର ଯେପରି ଲାଞ୍ଜ ହଲାଏ ସେହିପରି ହୁଅନ୍ତି । ଆରେ ଅଲପେଇଶା, ସ୍ତ୍ରୀ ହେଲା ବୋଲି ତା'ର କ'ଣ ଆଉ କିଛି ଲୋଡ଼ା ନାହିଁ ଖାଲି ତୋ ସହିତ ଶୋଉଥିବ । ପାର୍ବତୀର ଦେହ ଜଳିଯାଏ ସେମାନଙ୍କ କଥା ଭାବି । ଆଉ ଏଇ ଦେହଟା ବି ଦାଉ ସାଧୁଛି । ଆଖି ଯୋଡ଼ିକ ଦେଖି ସେଥିରୁ କ'ଣ ଇସାରା ପାଆନ୍ତି ସେମାନେ କେଜାଣି ଆହୁରି ଲାଗି ଆସି ଲାଞ୍ଜପିଟନ୍ତି ଶିକାର ଦେଖି ବାଘ ଲାଞ୍ଜ ପିଟିବା ପରି । ଆଖି ଦୁଇଟା ଦଗବ ଦେଇଛି, ସେ ତ ନିଜକୁ ଅନ୍ଧ କରିଦେଇ ପାରିବ ନାହିଁ ।

ଅନ୍ନପୂର୍ଣ୍ଣା ଭୋଜନାଳୟର କାମ ସାରିବା ବେଳକୁ ଚାରିଟା ବାଜିଯାଏ । ସହଦେବ ଖଟ ଉପରେ ଭିଡିମୋଡି ହୋଇ କହେ ଦେହ ସାରା ଦରଜ, ଟିକେ ମୋଡି ଦିଅନ୍ତୁ ନି । ଛେପଥୁକି ଭୂଇଁ ଉପରେ ପାଦ କଚାଡି ରଣଚଣ୍ଡୀ ପରି ବାହାରି ଯାଏ ପାର୍ବତୀ ।

ଆରେ । ଗରିବ ମାଇପ ସମସ୍ତଙ୍କ ଶାଳୀ ।

ମହେଶ୍ୱର ଯଦି ବଞ୍ଚିଥାଆନ୍ତା ଏମାନଙ୍କ ରକ୍ତ ଶୋଷି ନିଅନ୍ତି । ସେ ନିଆଶ୍ରୀ ବୋଲି ସିନା ତା' ଉପରେ ଏତେ ଲୋଭ, ତାକୁ ଭୋଗ କରିବା ପାଇଁ ଏଇ ଅସନା ଲୋକଙ୍କର ଏତେ ବାସନା । ପାର୍ବତୀ ହଠାତ୍ କାନ୍ଦି ପକାଏ । ସାମନ୍ତସିଂହାର ବାବୁଙ୍କ ଘରେ ସାଢ଼େ ଚାରିଟାରୁ ଛଅଟା । କାମ ବେଶି ନୁହେଁ କିନ୍ତୁ ଦିଅନ୍ତି ବେଶି । ବାବୁଙ୍କ ପୃଥୁଳା ସ୍ତ୍ରୀଙ୍କୁ ତେଲ ମାଲିସ କରି ତାଜା କରିବା ଦାୟିତ୍ୱ ତା' ଉପରେ ସମର୍ପି ଦେଇ ବାବୁ ସିନା ନିଶ୍ଚିନ୍ତ, କିନ୍ତୁ ବାବୁଆଣୀ ଯେ ଆଉ ଉପଯୁକ୍ତ ନୁହଁନ୍ତି ଏହା ବୁଝେ ପାର୍ବତୀ । ସାମନ୍ତସିଂହାର ବାବୁଙ୍କ ବୟସ ହେଲାଣି ।

ତଥାପି ଖାଇପିଇ ବେଶ୍ କୁନ୍ଦା କୁନ୍ଦା ଶରୀର । ମନ ବି ତାଜା । କଥା କଥାକେ ହସନ୍ତି ।

ଦିନେ ତାକୁ ଭିତରକୁ ନେଇ ବାବୁଆଣୀ କହିଲେ, ମନ ଗହନର ସବୁକଥା ତ ସମସ୍ତଙ୍କୁ କହି ହୁଏନାରେ ପାର୍ବତୀ । ମନର କଥା ଶୁଣିବା ଭଳି ଲୋକଟିଏତ ମିଳେ ନାହିଁ । ଭଲ ହେଲା । ତୁ ଆସିଛୁ । କିନ୍ତୁ ଅଏସ କରିବାକୁ ସମୟ କାହିଁ ବାବୁଙ୍କର । ଦିନେ ଦିନେ ପଡ଼ି ରହନ୍ତି ଖଟରେ । ତାଙ୍କୁ ଟିକେ ମାଲିସ କରି ଦିଅନ୍ତୁ ନାହିଁ... ଆଉ ତୋ ହାତଯଶ ପାଇ ସେ ବି ଆହୁରି ସତେଜ ଦିଶନ୍ତେ । ଜିଭ କାମୁଡି ସେଠାରୁ ପଳାଇ ଯାଏ ପାର୍ବତୀ । ଛି, ଛି, କି ଅସନା କଥା ଲୋ ମା......... ନିଜ କାମ ଅନ୍ୟକୁ ଦେଇ କରାଇନବାକୁ ଚାହାନ୍ତି ଏପରି ମଣିଷ ବି ଅଛନ୍ତି ଜଗତରେ ।

ଏ ଜଗତକୁ ଯେତିକି ଦେଖେ ସେତିକି ଅବାକ୍ ହୁଏ ପାର୍ବତୀ । ଉପରେ ସରଳ ସୁନ୍ଦର ଦିଶୁଥିବା ଦୁନିଆର ମଣିଷଗୁଡ଼ା ଯେ ଏତେ ଜଟିଳ ସେ ତାହା ଆଦୌ ବୁଝିପାରେ ନାହିଁ ।

ସଂଧ୍ୟାକୁ ଘରକୁ ଫେରେ ପାର୍ବତୀ ।

ସେତେବେଳେ ଜଗତଟା ତା ନିଜର ହୋଇଯାଏ । ସେ ଗୋଡ଼ ଲମ୍ୱାଇ ଦିଏ । ଝିଅ ତା' ଉପରେ ବସିଲେ ନଚାଏ ତାକୁ । ତାକୁ କୁତୁ କୁତୁ କରେ । ସେ ବି ମା ଛାତି, ବେକ, ହାତ, ଜଂଘରେ ଚିମୁଟି ଦେଇ ହସରେ ଗଡ଼ିଯାଏ । ପାର୍ବତୀ ତାକୁ ଛାତି ଉପରେ ଜାକି ଧରି କହେ ଆହୁରି ଯୋରରେ ଚିମୁଟି ଦେ... ଯୋରରେ କାମୁଡି ଦେ ଲୋ ସେତୁ ।

ସେତୁ ମାଆର ମୁହଁକୁ ବଲବଲ କରି ଚାହେଁ । ଯେମିତି ତାକୁ ଚିହ୍ନିଛୁ ଏଇ ପ୍ରଥମ । ବାପର ମୁହଁ, ବାପର ଚେହେରା ନେଇଛି ସେତୁ । ତାକୁ ଗେଲ କରିବାବେଳେ ସ୍ୱାମୀର ସୋହାଗ ମନେ ପଡିଯାଏ ପାର୍ବତୀର ।

ସେତୁ କହେ ଆଜି ମକବୁଲ ଘଇ ଆସିଥିଲା ।

ପାର୍ବତୀ କହେ କ'ଣ କହୁଥିଲା ।

ସେତୁ ଗୋଟେ ଖେଳଣା କାଢ଼ି ଆଣି ଦେଖାଏ ମା'କୁ । ମକ୍‌ବୁଲ ଘ ଇ ଦେଇଛି । ଆହୁରି ଗୋଟେ ଚିଜ ବି ଦେଇଛି ମା.... ମାରିବୁ ନାଇଁ କହ ତେବେ କହିବି ।

ପାର୍ବତୀ ଚିହିଁକି ଉଠେ । କାହିଁକି ମକ୍‌ବୁଲ ଜିନିଷ ଦବ, କାହିଁକି ସେ ପ୍ରତିଦିନ ଆସିବ, ସିଏ କିଏକି ।

ସେତୁ ବୁଝି ପାରେନା । ଦଉଡି ଯାଇ କାଗଜ ଖୋଳ ଭିତରେ ଥିବା ଲୁଗାଟା ଆଣି ମା କୋଳ ଉପରେ ଥୋଇ ଦେଇ କହେ ତୋତେ ଭଲ ମାନିବ ନାଲି କସ୍ତା ।

ପାର୍ବତୀ ପାଗଳ ହୋଇଯାଏ ।

ନିର୍ଘୁମ ପିଟେ ଝିଅକୁ । ସେତୁ କାନ୍ଦି କାନ୍ଦି ବେହୋସ ହୋଇଯାଏ । ତା'ପରେ ଭଗବାନଙ୍କୁ ଅଜସ୍ର ଗାଳି ଦେଇ ଝିଅକୁ ଛାତି ଉପରେ ଜାକି ତୁହାଇ ତୁହାଇ କାନ୍ଦେ ପାର୍ବତୀ । କେତେବେଳଯାଏ ଏମିତି କାନ୍ଦି ଚାଲିଥାଏ କେଜାଣି ତା'ର ହେଜ ହୁଏ ଯେତେବେଳେ ତା' ଆଖିର ଲୁହ ପୋଛି ନେଇ ସେତୁ କହେ ତୁ ଏମିତି ଅଝଟ ହେଲେ ମୋତେ ଦେଖିବ କିଏ । ମୁଁ ବଡ଼ ହେବାକୁ ଚାହେଁ ମା । ଶୀଘ୍ର ଶୀଘ୍ର ମୁଁ ବଡ଼ ହେଲେ ତୋତେ ଆଉ କାହା ଘରକୁ କାମ କରିବା ପାଇଁ ଯିବାକୁ ହେବ ନାଇଁ । ମୁଁ କରିବି.... ସବୁ କାମ ।

ପାର୍ବତୀ ଅବାକ୍ ବିସ୍ମୟରେ ଝିଅ ମୁହଁକୁ ଅନାଇ ରହେ ।

ଏଇ ସଂସାର ଏହିପରି । ଜଣକ ପରେ ଆଉ ଜଣେ ଆସନ୍ତି । ସ୍ଥାନ ଶୂନ୍ୟ ରହେ ନାହିଁ । ପ୍ରତିଦିନ ଜନ୍ମ । ପ୍ରତିଦିନ ମରଣ । କିନ୍ତୁ ତା' ସଂସାର ଉଜୁଡ଼ି ଯାଇ କାହାର କ'ଣ ଲାଭ ହେଲା ବୁଝି ପାରେନା ପାର୍ବତୀ । କୋଇଲା ଖଣି ଭିତରେ ଅଣନିଃଶ୍ୱାସୀ ହୋଇ କେତେ କଷ୍ଟ ପାଉଥିବ ମହେଶ୍ୱର ! ଆହା !

ସେଦିନ ସାମନ୍ତ ସିଂହାର ବାବୁଙ୍କ ସ୍ତ୍ରୀ କହୁଥିଲେ ଦଇବ ଦଉଡି ମଣିଷ ଗାଈ, ଯେଣିକି ଉଟାରେ ତେଣିକି ଯାଇ । ଦଇବ ତା'ହେଲେ ସବୁଠାରୁ ବଳି ବଡ଼ । ସବୁଠାରୁ ବେଶି ବଳବାନ । ସେଇ ଦଇବ ତ ଭଗାରୀ । ଆଉ କହିବ କାହାକୁ ଯେ... । ତଥାପି କହିବାକୁ ଇଚ୍ଛା ହୁଏ । ତଥାପି ଗାଳି ଦବାକୁ ଇଚ୍ଛାହୁଏ ଆପଣାର ଲୋକ ପରିସବୁ ସହୁଥିବା ସେଇ ଭଗବାନଙ୍କୁ ।

କେତେଦିନ ପରେ ମକ୍‌ବୁଲ ଆସି ପହଞ୍ଚିଲା ଆଉ ଥରେ । ମଝିରେ ଗାଁକୁ ଯାଇଥିଲା ବୋଲି ଆସି ପାରି ନଥିଲା । ଚାକରାଣୀମାନଙ୍କର ଛୁଟି ନଥାଏ । ଥିଲାବାଲାଙ୍କ ଘରେ ଦବା ନବା, ଖାଇବା ପିଇବା, ରନ୍ଧାବଢ଼ା ତ ବନ୍ଦ ହୁଏନା କେବେ । ତେଣୁ କାହା ସହିତ ନିରୋଳାରେ ବସି ଘଣ୍ଟାଏ ଦୁଃଖ ସୁଖ ହବାକୁ ସମୟ ନଥାଏ । ସନ୍ଧ୍ୟା ବେଳଟା ଆଉ କାହା ପାଇଁ ନୁହଁ ତା' ନିଜର । ସେଥିରୁ ଆଉ କାହାକୁ ଭାଗ ଦବାକୁ ଚାହେଁନି ସେ । ଚାରି ଜାଗାରେ କାମ କରି ମାସକୁ ଛଅଶହ ଟଙ୍କା ଉପାର୍ଜନ କରେ ପାର୍ବତୀ । ନର୍ଦ୍ଦମାକୁ ଲାଗି ଯୋଉ ନୁଆଁଣିଆ ବଖରା କୁଡ଼ିଆ ସେଇ ତା'ର ବାସସ୍ଥାନ । ସେଥିପାଇଁ ମାସକୁ ମାସ ପଚାଶ ଟଙ୍କା ଦବାକୁ ହୁଏ ଦାଦାକୁ । ଦାଦା ବସ୍ତିର ମାଲିକ । ସେ ବସ୍ତିର ସରକାର । ତାକୁ ଅମାନ୍ୟ କଲେ ସ୍ୱୟଂ ଯମରାଜ ମଧ୍ୟ ରକ୍ଷା କରି ପାରିବେ ନାହିଁ ।

ମକ୍‌ବୁଲ କହିଲା ସବୁ । ବାଧ ହୋଇ ଶୁଣିଲା ପାର୍ବତୀ ।

ପୃଥିବୀ ଛୋଟ ନୁହେଁ ଅନେକ ଅନେକ ବଡ଼ । ମୁଣ୍ଡ ଗୁଞ୍ଜିବା ପାଇଁ ଅନେକ ସ୍ଥାନ । ଦାଦାର ଉପନିବେଶ ଛାଡ଼ି ଆଉ କୌଣସି ଦ୍ୱୀପକୁ ପଳାଇଗଲେ କ୍ଷତି କ'ଣ ! ଦୁହେଁ ସାଥୀ ହୋଇ ରହିବେ । ଦୁହିଁଙ୍କର ସୁଖ ଦୁଃଖ ବାଣ୍ଟି ନେବେ । ସେତୁକୁ ସେ ଫୋପାଡ଼ି ନଦେଇ ନିଜର କରିନବ । ସମୟ ସରିଯାଉଛି, ବୟସ ବି ଗଡ଼ି ଯାଉଛି । ଡେରି କରି ଲାଭ କ'ଣ ?

ପାର୍ବତୀ ଚିନ୍ତାକରେ । ଭଲକଥା କହୁଛି ମକବୁଲ । ଗୋଟେ ନିଶ୍ଚିନ୍ତ ନିରାପଦ ଆଶ୍ରୟ ତ ପାଇବ । ଏଇ ଜନ୍ତୁ ଜାନୁଆରମାନଙ୍କ ଠାରୁ ରକ୍ଷା ପାଇବ ସେ ।

ତା'ର ବିଶ୍ୱାସ ଦୋହଲି ଯାଇଛି ସେଇଦିନ । ସେଇଦିନୁ ମଣିଷ ଉପରେ ଭରସା ରଖିପାରୁ ନାହିଁ ।

ସେତେବେଳେ ସାମନ୍ତସିଂହାର ବାବୁଙ୍କ ଘରେ କାମ କରୁନଥିଲା ପାର୍ବତୀ ।

ମଠରେ ଦୁଇଘଣ୍ଟା କାମ କରୁଥିଲା ପ୍ରତିଦିନ । ଉପରଓଳି ଚାରିଟାରୁ ଛଅଟା । ମହନ୍ତ ମହାରାଜ ଦେବତୁଲ୍ୟ ଲୋକ । ଅଧେ ଦିନ ଓପାସ ବାର ବ୍ରତ । ଭଗବାନଙ୍କୁ ନେଇ ସମୟ କାଟନ୍ତି । ସତ୍ ଚିନ୍ତା, ସେବା ସାଧନା ସକାଶେ ପ୍ରବଚନ ଦିଅନ୍ତି ।

ଦିନେ ପ୍ରବଳ ବର୍ଷାରୁ ସେ କାମ ସାରି ମଠରୁ ବାହାରି ପାରିଲା ନାହିଁ । ପ୍ରବଳ ବର୍ଷା ଯୋଗୁ ଆଉ କେହି ଭକ୍ତ ଆସିନଥିଲେ । ମଠ ନିର୍ଜନ ଥିଲା କହିଲେ ଚଳେ । ଚେଲାକୁ ଔଷଧ ଆଣିବା ପାଇଁ ପଠାଇଦେଇ ପାର୍ବତୀକୁ କୋଠରୀ ଭିତରେ ସଫା କରିବା ପାଇଁ କହିଲେ । ସେ ସଫା କରିବା କାମ ଆରମ୍ଭ କରିବା ପୂର୍ବରୁ କବାଟ ବନ୍ଦ କରି ତାକୁ ଭିଡି ଧରିଲେ ମହନ୍ତ ମହାରାଜ । ଭାଗ୍ୟକୁ ଝାଞ୍ଜୁଣୀଟା ହାତରେ ଥିଲା

ପାର୍ବତୀର । ସେଥିରେ ସେ ତାଙ୍କର ବିଷ ଏମିତି ଯୋରରେ ଝାଡ଼ିଦେଲା ଯେ ଲଙ୍ଗଳା ମୁକୁଳା ହୋଇ ତଳେ ପଡ଼ିଗଲେ ମହନ୍ତ ଏବଂ ସେଇ ମୁହୂର୍ତ୍ତରେ ମଠଛାଡ଼ି ବର୍ଷାରେ ଭିଜି ଭିଜି ଘରକୁ ଫେରି ଆସିଲା ପାର୍ବତୀ ।

ସେଇଦିନୁ ଅବିଶ୍ୱାସ ତା ନିଃଶ୍ୱାସପ୍ରଶ୍ୱାସରେ । ମକ୍‌ବୁଲ ଯଦି ଅବିଶ୍ୱାସୀ ହୁଏ ? ଛାତି ଯିବ ସିନା ପେଟ ପୁରିବ ନାହିଁ ।

ପାର୍ବତୀ ତଥାପି ନୀରବ ରହିବା ଦେଖି ସେ ତା' କଥାରେ ସମ୍ମତ ଭାବି ମନଖୁସିରେ ସେଦିନ ଫେରିଗଲା ମକ୍‌ବୁଲ ।

ପାର୍ବତୀ ପ୍ରେମରେ ପଡ଼ିଗଲା । ଜଗତ ଯାକ ତାକୁ ମକ୍‌ବୁଲ୍‌ମୟ ଦିଶିଲା ଏବଂ ଶୟନେ, ସ୍ୱପନେ, ଜାଗରଣେ କେବଳ ତାହାରି ବିଷୟ ଚିନ୍ତା କଲା । କାମରେ ମନ ଲାଗିଲା ନାହିଁ । ଝିଅକୁ ଗେଲ କଲାନାହିଁ । ବାରମ୍ବାର ଅନ୍ୟମନସ୍କ ହେଲା । ବେଳେ ବେଳେ ଖାଇବାରୁ କାଟି ଫୁଲ ଆଣି ଜୁଡ଼ା ସଜାଇଲା ।

ଦେଶାନ୍ତରୀ ହେବା ମକ୍‌ବୁଲ୍ ଠିକ୍ ସମୟରେ ଆସିଲା । ସେତେବେଳକୁ ସବୁ କାମ ଶେଷକରି ଅଧୀର ଉତ୍କଣ୍ଠାରେ ଅପେକ୍ଷା କରୁଥିଲା ପାର୍ବତୀ । ଗୋଟେ ନୂଆ ବାଟ ଫିଟିବ ଆଜିଠାରୁ । ଗୋଟେ ନୂଆ ଜୀବନ ଜୀଇଁବ ମକ୍‌ବୁଲ ସହିତ । ଗୋଟେ ନୂଆ ଜଗତ ପ୍ରସାରିତ ହେବ ତା' ଆଗରେ ।

ପାର୍ବତୀ ଉଠେଇନେଲା ଝିଅକୁ ।

ମକ୍‌ବୁଲ ଉଠେଇନେଲା ଟିଣବାକ୍ସ ଆଉ ଗଣ୍ଠିଲି ।

ସେମାନେ ବାହାରି ପଡ଼ିଲେ ଫର୍ଚ୍ଚା ହୋଇ ଆସୁଥିବା ଆକାଶର ଲାଜୁଆ ଆଲୁଅରେ । କୁହୁଡ଼ି ଟିକେ ଥାଏ ବୋଲି ଦୂରରୁ ମୁହଁ ବାହାରିବା କଷ୍ଟ ।

କଟକ ଷ୍ଟେସନରୁ ଗାଡ଼ି ଧରିଲେ ।

ପାର୍ବତୀର ଆଖିପତା ବନ୍ଦ ହୋଇଗଲା ସୁଲୁସୁଲିଆ ପବନ ବାଜି ।

ମହେଶ୍ୱର ଠିଆ ହେଲା ଆଗରେ । ପ୍ରତିଦିନ ପରି କୋଇଲା ଖଣିରେ କାମ ଶେଷ କରି ଫେରି ଆସିଛି ସେ । ଝିଅକୁ କୋଳ ଉପରକୁ ଉଠାଇ ନେଇ କହୁଛି ତୁ ବଡ଼ ହେଲେ ତୋ ବାପର ନାଁ ପଚାରିଲେ ତୁ ଖାଲି ମୋ ନାଁ କହିବୁନାହିଁ ଝିଅ । ତୋ ବାପ ମା ଦୁହିଁଙ୍କର ନାଁ କହିବୁ । ମହେଶ୍ୱର ଆଉ ପାର୍ବତୀ। ପାର୍ବତୀ କହିଲା ବାପର ନାଁ ଅନୁସାରେ ବଂଶର ନାଁ ହୁଏ ପରା । ମହେଶ୍ୱର ହସି ଦେଇ କହିଲା ସେଗୁଡ଼ା ପୁରୁଣାକାଳିଆ କଥା । ସେତୁ ମୋର ଯେତିକି ତୋର ସେତିକି ।

ହଠାତ୍ ଝାଙ୍କୁଣି ଖାଇ ନିଦ ଭାଙ୍ଗିଗଲା । ସେତୁକୁ ପାଖରେ ନ ଦେଖି ହାଉଳି ଖାଇଲା ପାର୍ବତୀ। ସେଇ ଡବାର ଲୋକ ସବୁ ଓହ୍ଲାଇ ଯାଇଥିଲେ କେତେବେଳେ । ମକ୍‌ବୁଲ ସେତୁକୁ ଧରି ନଦୀ ଦେଖାଇବା ବାହାନା କରି ଗାଡ଼ି ବାହାରେ ଝୁଲାଉଥିଲା । ପାର୍ବତୀ ଶିହରି ଉଠିଲା ଆତଙ୍କରେ । ଯଦି ହାତରୁ ଖସିଯାଏ... ଯଦି ତାକୁ ନିରଙ୍କୁଶ ଭୋଗ ଦଖଲ କରିବା ପାଇଁ ସେ ନଦୀ ଦେଖାଇବା ବାହାନାରେ ନଦୀ ଗର୍ଭକୁ ଛାଡ଼ିଦିଏ .....

ଆଖି ପିଛୁଳାରେ କର୍ତ୍ତବ୍ୟ ନିର୍ଣ୍ଣୟ କରିନେଲା ପାର୍ବତୀ ।

ଝିଅକୁ ରଙ୍କୁଣୀ ଚିଲ ପରି ଝାମ୍ପି ନେଲା ବେଳେ ତାହାରି ଧକ୍‌କାରେ ନଦୀ ଗର୍ଭକୁ ଖସି ପଡ଼ିଲା ମକ୍‌ବୁଲ ।

ସେତୁକୁ ଛାତି ଉପରେ ସୁରକ୍ଷିତ କରି ପାର୍ବତୀ ଭାବୁଥିଲା ଏବେ ସେ କ'ଣ କରିବ, କୁଆଡ଼େ

ଯିବ... ।

ଭଗବାନ ବୋଲି ଗୋଟେ କିଏ ଅଛି ପରା ।

କାହିଁ କୋଉଠି ନିଶାଖାଇ ଶୋଇଛି ସେ । ପାର୍ବତୀ ପାଗଳୀ ପରି ଆଗ ଷ୍ଟେସନରେ ଗାଡ଼ିରୁ ଓହ୍ଲାଇ ପଡ଼ିଲା ।

ସେଇଦିନୁ ସେ ଖୋଜୁଛି ତାଙ୍କୁ.... ବାଟ ଅବାଟରେ, ଘର ଓ ବାହାରେ, ମନ୍ଦିର ଓ ମସ୍‌ଜିଦରେ । ବେଳେବେଳେ ତାର ଭ୍ରମ ଭାଙ୍ଗେ । ସେ ମନକୁ ମନ କହେ ଯୋଉ ବଇଦ ପଇସା ନ ନେଇ ଉଷୁଦ ଦେଇ ଝିଅକୁ ଭଲ କରି ଦେଲା ସିଏ ହୁଏତ ଭଗବାନ ହୋଇଥିବ.... ନଚେତ୍ ମା ଓ ଝିଅ ମୋଟର ଗାଡ଼ିର ଧକ୍କା ଖାଇ ଛିଟିକି ପଡିବା ବେଳେ ଯେଉଁ ବଳବାନ ଲୋକଟା ସେମାନଙ୍କୁ ସାଉଁଟି ନେଇ ଘରେ ଆଶ୍ରୟ ଦେଇଥିଲା ସେ ହୋଇଥିବ... ଅବା ଯୋଉ ବୁଢ଼ା ନିଜକୁ ଅକୁଳାଣ ହେଉଥିବା ରୋଟିରୁ ଖଣ୍ଡେ ଭାଗଦିଏ ସେତୁକୁ ସିଏ... ।



# ଅନ୍ୟ ଶ୍ରୀମତୀ

ବିଭୂତି ପଟ୍ଟନାୟକ



ଅଧ୍ୟାପକ ମନୋରଞ୍ଜନଙ୍କ ଘରେ ଜମି ଉଠିଲା ସନ୍ଧ୍ୟା ଆସର । ବଡ଼ ଦିନର ଆନନ୍ଦ ଉପଭୋଗ କରିବା ପାଇଁ ସେ ମତେ ଆମନ୍ତ୍ରଣ କରିଥିଲେ ।

ଦର୍ଶନ ଅଧ୍ୟାପକ ମନୋରଞ୍ଜନ କେବଳ ମୋର ସହକର୍ମୀ ନଥିଲେ, ଥିଲେ କଲେଜର ସହପାଠୀ । ଆମେ ଦୁହେଁ ଥିଲୁ ସେତେବେଳେ ଖ୍ରୀଷ୍ଟ କଲେଜର ଛାତ୍ର । ମୁଁ ତାଙ୍କୁ ଆମ ଘରକୁ ରଜ ଉତ୍ସବରେ ପୋଡ ପିଠା ଖୁଆଇ ଥିଲି-ବଡ ଦିନରେ ସେ ମତେ କେକ୍ ।

ଅନେକ ଦିନ ପରେ ସେ ସହକର୍ମୀ ଭାବରେ ଆମ କଲେଜକୁ ବଦଳି ହୋଇ ଆସିଲା ପରେ ଏଇ ଆସିଲା ପ୍ରଥମ ବଡ଼ଦିନ ଆଉ ତା ସହିତ କେକ୍ ଖାଇବାର ଆମନ୍ତ୍ରଣ ।

ଆମର ଆସରରେ ଆଲୋଚନା ଯେତେବେଳେ ଶୀର୍ଷ ବିନ୍ଦୁରେ, ସେତିକି ବେଳେ ତାଙ୍କ ପୁଅ ଆସି ଖବର ଦେଲା - ଡାଡି ଜଣେ ଭଦ୍ର ମହିଳା .....

ଡ଼ିସେମ୍ବର ପଚିଶର ଶୀତାର୍ତ୍ତ ସଂଧ୍ୟା ଭିତରକୁ ଜଣେ ଭଦ୍ର ମହିଳା ପଶିଆସିବା ମାତ୍ରେ ପରିବେଶ ହଠାତ୍ ଉଷ୍ମ ହୋଇ ଉଠିଲା ।

ଭଦ୍ର ମହିଳା ବେଶ୍ ଦୀର୍ଘାଙ୍ଗୀ । ଗୋରୀ ନହେଲେ ମଧ ବେଶ୍ ସୁନ୍ଦରୀ । ବୟସ ଅନୁମାନ କରିବା କଷ୍ଟ । ତେବେ ଉତର -ତିରିଶିର ଧୂଳି ଝଡରେ ତାଙ୍କର ଅଙ୍ଗରେଖା ଯେ କିଛି ପରିମାଣରେ ବିପର୍ଯ୍ୟସ୍ତ ହୋଇ ଯାଇଥିଲା, ତାହା ତାଙ୍କ ପକ୍ଷରେ ଗୋପନ କରିବା ସମ୍ଭବ ନଥିଲା ।

କୌଣସି ଭୂମିକା ନ କରି ଭଦ୍ର ମହିଳା କହିଲେ-

ମୁଁ ଇନ୍‌ସୁରାନ୍‌ସ ଏଜେଣ୍ଟ ।

ଇନ୍‌ସୁରାନ୍‌ସ ଏଜେଣ୍ଟ ।

ହଠାତ୍ ଏ ବଡ଼ ଦିନର ଉତ୍ସବକୁ ମାଟି କରିଦେବା ପାଇଁ ଏ ଜୀବନ ବିମା କେଉଁଠି ଥିଲା ?

ମନୋରଞ୍ଜନ ହାତ ଯୋଡ଼ି କହିଲେ- ମାଫ୍ କରିବେ । ଇନ୍‌ସୁରାନ୍‌ସ ପାଇଁ ମୋର କୌଣସି ଆକର୍ଷଣ ନାହିଁ । ମୁଁ ଇହକାଳରେ ବିଶ୍ୱାସ କରେ ପରକାଳରେ ମୋର ଆସ୍ଥା ନାହିଁ । ଆଉ ବିମାର ନିର୍ଦ୍ଦିଷ୍ଟ ତାରିଖ ଆଗରୁ ନମଲେ ବୀମାକରି ଲାଭ କ'ଣ ? ତା ଅପେକ୍ଷା ଯଦି କେବେ ମୋର ଟଙ୍କା ହାତରେ ବଳେ, ମୁଁ ବ୍ୟାଙ୍କରେ ରଖିବି -

ଭଦ୍ର ମହିଳାଙ୍କ ଚେହେରା ଦେଖି ମୁଁ ଚିହ୍ନିପାରି ନଥିଲି, କିନ୍ତୁ କଣ୍ଠସ୍ୱର ମୋର କିପରି ଚିହ୍ନା ଚିହ୍ନା ମନେ ହେଲା । କିଏ ?

ଭଦ୍ରମହିଳା ସ୍ମିତ ହସି କହିଲେ - ଆପଣ ଖୁବ୍ ବେଶୀ ବିଚଳିତ ହେବା ଦରକାର ନାହିଁ ସାର ।

ପାଞ୍ଚ ହଜାର, ଦଶ ହଜାର ଯେତେ ପରିମାଣର ଇଚ୍ଛା କରନ୍ତୁ ତିନି ମାସରେ ଥରେ ଷାଠିଏ ଟଙ୍କା କି ଶହେ ଟଙ୍କା ଡେରି କଲେ ବୟସ ଅଧିକ ହୋଇଗଲେ ପ୍ରିମିୟମ୍ ବଢ଼ିଯିବ । ଆଉ ଷାଠିଏ କି ଶହେ ଟଙ୍କା ଆଜିର ଦିନରେ କିଛି ନୁହେଁ- ଆପଣ ମାସକୁ ଶହେ ଟଙ୍କା ସିଗାରେଟ୍ ଧୂଆଁରେ ଉଡାଇ ଦେଉଥିବେ ।

ମନୋରଞ୍ଜନ ପ୍ରତିବାଦ କଲେ - ଆପଣ ମୋର ଅଯଥା ବଦନାମ କରୁଛନ୍ତି - ମୁଁ ଆଦୌ ସିଗାରେଟ୍ ଖାଏନାହିଁ ।

ଭଦ୍ର ମହିଳା ସହଜରେ ହାରିଯିବା ପାତ୍ରୀ ନୁହଁନ୍ତି ।

ସେ କହିଲେ - ସିଗାରେଟ୍ ନଖାଇଲେ ସିନେମା, ଥିଏଟର ଦେଖାରେ ତ ମାସକୁ ପଚାଶ ଶହେ ଖର୍ଚ୍ଚ ହେଉଥିବ । ହୁଏ ନା ନାହିଁ ? ମୋ ରାଣ ଖାଇ କୁହନ୍ତୁ ତ- ମୁଁ ତଥାପି ସଂଦେହରେ ଧନ୍ଦି ହୋଇଥିଲି କେବଳ କଣ୍ଠସ୍ୱର ନୁହେଁ, କଥା କହିବାର ଭଙ୍ଗୀ ମଧ୍ୟ ମୋର ଚିହ୍ନା ଚିହ୍ନା ମନେ ହେଉଛି । କିଏ ? ମନୋରଞ୍ଜନ ଏଥର ଈଷତ ବିରକ୍ତ ହୋଇ କହିଲେ -

ଛାଡନ୍ତୁ ମାଡାମ୍ । ଜୀବନ ଧରି ସଂସାରରେ ରହିଲେ କିଛି କିଛି ବଦଖର୍ଚ୍ଚ କରିବାକୁ ହୁଏ । ସେଥିରୁ ଖର୍ଚ୍ଚକାଟ କରି ଇନସୁରାନ୍ସ କଲେ ବଞ୍ଚି ରହିବାରେ ଆଉ କୌଣସି ଚାର୍ମ ରହେ ନାହିଁ ।

ମନୋରଞ୍ଜନ ସାନ ଝିଅଟା ଏତିକି ବେଳେ ଆସି ଦୁଷ୍ଟାମୀ ଆରମ୍ଭ କରିଦେଲା ଆଉ ଭଦ୍ରମହିଳା ସେଇ ସୁଯୋଗରେ ତାକୁ କୋଳକୁ ଉଠାଇ ନେଇ କହିଲେ -

- ସେ ସବୁ କଥା ବାଦ୍ ଦିଅନ୍ତୁ । ଆପଣଙ୍କୁତ ପୁଣି ଏଇ ଲିଟିଲ ଲେଡି କଥା ଭାବିବାକୁ ହେବ ? ଅଧ୍ୟାପକ ଚାକିରୀ । କଳା ଟଙ୍କାର ମୁହଁ ଦେଖିବା ପ୍ରଶ୍ନ ଉଠୁ ନାହିଁ । ଏ ଲିଟିଲ୍ ଲେଡି ଯେତେବେଳେ ରିଅଲ ଲେଡ଼ି ହୋଇଯିବ ଏବଂ ତା' ପାଇଁ ଖୋଜାହେବ ଜଣେ ପ୍ରିନ୍ସ ଚାର୍ମିଂ.... ସେତେବେଳେ ? ସେତେବେଳେ କେବଳ ଜୀବନ ବୀମା ଆପଣଙ୍କୁ ସାହାଯ୍ୟ କରିପାରେ । ବିଶ୍ୱାସ କରନ୍ତୁ ଜୀବନ ବୀମାର କୌଣସି ବିକଳ୍ପ ନାହିଁ ।

ଅଧ୍ୟାପକ ମନୋରଞ୍ଜନ ଏଥର ନାହିଁ କରିପାରିଲେ ନାହିଁ । ଦଶହଜାର ଟଙ୍କାର ଇନ୍ସୁରାନ୍ସ ଫର୍ମ ପୂରଣ କରି ଭଦ୍ରମହିଳା ଚାଲିଗଲା ପରେ, ମୋର ମନେ ପଡ଼ିଲା, ଆରେ ଏ ତ ଶ୍ରୀମତୀ ପରିଜା ।

ମୋ ମୁହଁର ହସ ଦେଖି ମନୋରଞ୍ଜନ ପଚାରିଲେ -

କ'ଣ ହେଲା ? ହସୁଛ ଯେ । ଦଶ ହଜାର ଟଙ୍କା ଇନ୍ସୁରାନ୍ସ କରିବା କଣ ବୋକାମୀ ହେଲା । ପ୍ରିମିୟମତ ଦିଆଯାଇନି - ବର୍ତ୍ତମାନ ବି ପ୍ରସ୍ତାବ ବାତିଲ କରି ଦିଆଯାଇ ପାରେ ।

ମୁଁ ପ୍ରତିବାଦ କଲି - ନା, ନା, ଜୀବନ ବୀମାର ବିକଳ୍ପ ନାହିଁ - ଏଇଟା କେବଳ ଗୋଟାଏ ସ୍ଲୋଗାନ ନୁହେଁ । ଅନେକ ପରିମାଣରେ ବାସ୍ତବ ସତ୍ୟ ମୁଁ ହସୁଥିଲି ଅନ୍ୟ କାରଣ ପାଇଁ ଝିଅଟା ମୋର ଚିହ୍ନା । କିନ୍ତୁ ସେ ଚାଲିଗଲା ପରେ ମୁଁ ତାକୁ ଚିହ୍ନୁଛି ।

ଆମେ ଯେତେବେଳେ ଖ୍ରୀଷ୍ଟ କଲେଜର ଛାତ୍ର ଥିଲୁ ସେତେବେଳେ ସେଠାରେ କୌଣସି ଛାତ୍ରୀ ନଥିଲେ । ମନେ ଅଛି । ମନୋରଞ୍ଜନ ମୁଣ୍ଡ ଟୁଙ୍ଗାରି ହଁ ଭରିଲେ । ଫୁଲଗଛ ନଥାଇ ବଗିଚା ଆଉ ଛାତ୍ରୀ ନଥାଇ କଲେଜ ଆଜି ଏକଥା ବିଶ୍ୱାସ କରିବା କଷ୍ଟ କିନ୍ତୁ ସେଦିନ ଆମ କଲେଜରେ ଛାତ୍ରୀ ନଥିଲେ ବୋଲି ଆମର କୌଣସି ମାନସିକ କଥା ନଥିଲା । ଠିକ ନାଁ । ହଁ ଆମ କଲେଜ ପାଖରେ ଶୈଳବାଳା ମହିଳା କଲେଜ ଆମ କଲେଜରେ ଛାତ୍ରୀ ନଥିବାରୁ ଦୁଃଖକୁ ଅନେକ ପରିମାଣରେ ଲାଘବ କରିଦେଇ ଥିଲା । ଆମ କଲେଜ ହେଉଥିଲା ସକାଳ ବେଳା । ଶୈଳବାଳା ଦଶରୁ ଚାରି। ଆମ ଭିତରୁ ଅନେକ କଲେଜ

ସାରି ଶୈଳବାଳା ସାମ୍ନାରେ ଛାତ୍ରୀମାନେ କଲେଜ ଭିତରକୁ ପ୍ରବେଶ କଲାବେଳେ ଖୁବ୍ ଭିଡ଼ କରୁଥିଲେ । ମନେ ପଡୁଛି ।

କିନ୍ତୁ ଏସବୁ କଥା ସହିତ ଇନ୍‌ସୁରାନ୍‌ସ ଏଜେଣ୍ଟ ଭଦ୍ରମହିଳାଙ୍କର କି ସମ୍ପର୍କ ? ତମେ ତ କେବେ ଶୈଳବାଳା ମହିଳା କଲେଜ ସାମ୍ନାରେ ଛାତ୍ରୀମାନେ ଉଚ୍ଚ ପ୍ରାଚୀର ଘେରା କଲେଜ ପରିସର ମଧ୍ୟରେ ପ୍ରବେଶ କଲାବେଳେ ଆଡ୍ଡା ଦେବାକଥା ମୋର ମନେପଡୁନାହିଁ ।

ମୁଁ ମନୋରଞ୍ଜନଙ୍କ ସହିତ ସହମତ ହେଲି । ହଁ ମୁଁ ସେତେବେଳେ ଖ୍ରୀଷ୍ଟ କଲେଜର ବିଶିଷ୍ଟ ଛାତ୍ର ନେତା । ଯେଉଁମାନେ ଚଣ୍ଡୀ ଛକରେ ଠିଆ ହୋଇ ମହିଳା କଲେଜକୁ ଯାଉଥିବା ଝିଅମାନଙ୍କୁ ସେମାନଙ୍କ ସୌନ୍ଦର୍ଯ୍ୟ ପାଇଁ ମାର୍କ ଦେଉଥିଲେ ସେମାନଙ୍କ ମଧ୍ୟରେ ମୁଁ ନଥିଲି । କିନ୍ତୁ ଘଟଣା କ୍ରମେ ମୁଁ ଏଇ ଶ୍ରୀମତୀ ପରିଜା ସହିତ ଜଡିତ ହୋଇ ଯାଇଥିଲି ।

ମୋ କଥା ଶୁଣି ମନୋରଞ୍ଜନ ହସିଉଠି କହିଲେ -

- ଈଶ୍ୱରଙ୍କ ଦ୍ୱାହି ଦେଇ ତମେ ଯଦି କୁହ ଯେ ଶୈଳବାଳାର କୌଣସି ଝିଅର ପ୍ରେମରେ ପଡିଥିଲ । ମୁଁ ଏକଥା ବିଶ୍ୱାସ କରିବି ନାହିଁ । କିନ୍ତୁ ତମ ଉପରେ ଆମ ସମସ୍ତଙ୍କର ସେତେବେଳେ ତୀକ୍ଷଣ ଦୃଷ୍ଟିଥିଲା । ଆମ ଆଖିକୁ ଫାଙ୍କିଦେଇ ତମେ·କାହାରି ପ୍ରେମରେ ପଡିଯିବା ସେତେବେଳେ ସମ୍ଭବ ନଥିଲା ।

ପ୍ରେମକଥା ମୁଁ କହିନି । ଆମ ସମୟରେ ଆଜିକାଲି ଛାତ୍ର ଛାତ୍ରୀଙ୍କ ଭଳି କେହି ହଠାତ୍ ପ୍ରେମରେ ପଡ଼ିବା ସମ୍ଭବ ନଥିଲା । ସେ ସମୟ ଥିଲା ଅଲଗା । ସେ କାଳର ନୈତିକତାର ମାପ କାଠିରେ ଏ ସମୟର ଆଦର୍ଶହୀନ ଘଟଣାର ପରିମାପ କରାଯାଇ ପାରେନା । କିନ୍ତୁ ବିଶ୍ୱାସ କର - ମୁଁ ପ୍ରେମରେ ପଡି ନଥିଲି କିନ୍ତୁ ଏଇ ଝିଅଟା ସହିତ ଆକସ୍ମିକ ଭାବରେ ଜଡିତ ହୋଇ ପଡିଥିଲି ।

ଘଟଣାଟା ଜାଣିବା ପାଇଁ ମନୋରଞ୍ଜନ ମୋ ମୁହଁକୁ ଉତ୍ସୁକ ଦୃଷ୍ଟିରେ ଚାହିଁ ରହିଲେ ।

ସେତେବେଳକୁ ସେକେଣ୍ଡ ରାଉଣ୍ଡ କଫି ଆସିଗଲା।

ଉଷ୍ମ କଫି କପ୍‌ରୁ ଗୋଟିଏ ସିପ୍ ନେଇ ମୁଁ କହିଲି - ସେ ଦିନ ଅପରାହ୍ନରେ ବାରବାଟି ଷ୍ଟାଡିୟମ୍ ଦେଇ ନଈ କୂଳେ କୂଳେ ଯେଉଁ ରାସ୍ତା ଯୋବ୍ରା ପର୍ଯ୍ୟନ୍ତ ଲମ୍ବି ଯାଇଛି । ସେଇ ରାସ୍ତାରେ ଯାଉଥିଲି । ଦେଖିଲି ବିପରୀତ ଦିଗରୁ ରିକସାରେ ଆସୁଥିବା ଗୋଟିଏ ଝିଅ ରିକ୍‌ସାରୁ ମୁହଁ ଗଳାଇ ପଛପଟ ପର୍ଦ୍ଦାଟେକି ରାସ୍ତାକୁ ଚାହୁଁଛି ଆଉ ବେଳେବେଳେ ଦୁଇ ହାତ ପାପୁଲିରେ ନିଜ ମୁହଁକୁ ଚାପି ଧରୁଛି । ରିକ୍‌ସାଟା ମୋର ନିକଟବର୍ତ୍ତୀ ହେବା ମାତ୍ରେ ସେ ରିକ୍‌ସା ଅଟକାଇ ମୋ ପାଖକୁ ଚାଲିଆସିଲା ଏବଂ ପରମାତ୍ମୀୟା ଭଳି ମତେ କହିଲା - ମତେ ବଞ୍ଚାନ୍ତୁ- କେଲଜ ପାଖରୁ ଦୁଇଜଣ ଗୁଣ୍ଡା ମତେ ଅନୁସରଣ କରି ସାଇକେଲରେ ପଛେ ପଛେ ଆସୁଛନ୍ତି ଆଉ ଖୁବ୍ ଅଶ୍ଳୀଳ ମନ୍ତବ୍ୟମାନ ମତେ ଶୁଣାଉଛନ୍ତି -

ସତକୁ ସତ ରିକ୍‌ସା ପଛେ ପଛେ ଆମ କଲେଜର ଦୁଇଜଣ ଛାତ୍ର ଆସୁଥିଲେ । ବୟସ୍କ ଛାତ୍ର । ସେତେବେଳେ ସରକାରୀ କର୍ମଚାରୀମାନେ ଅନେକ ଆମ କଲେଜରେ ପଢୁଥିଲେ । କିନ୍ତୁ ସେମାନଙ୍କୁ ଗୁଣ୍ଡା କହିବା ଠିକ୍ ହେବନାହିଁ । ମତେ ଦେଖି ସେମାନେ ପଛକୁ ସାଇକେଲ ଘୂରାଇ ପଳାଇଥିଲେ । ମୁଁ ଝିଅଟିକୁ କହିଥିଲି-

- ଅନୁସରଣକାରୀମାନେ ତ ପୃଷ୍ଠଭଙ୍ଗ ଦେଇ ପଳାଇଲେଣି । ଏଥର ତମେ ନିର୍ଭୟରେ ଘରକୁ ଯାଅ ।

ମୋ କଥା ଶୁଣି ସେ କିନ୍ତୁ ଏକାକିନୀ ଫେରିବାକୁ ସାହାସ କଲାନାହିଁ । ସେ ଲୋକ ଦୁଇଟା ଆଜି ନୁହେଁ ଅନେକ ଦିନ ହେଲା ତା ରିକ୍‌ସା ପଛେ ପଛେ ନିୟମିତ ଫଲୋ କରୁଥିଲେ । ଅଶ୍ରାବ୍ୟ କମେଣ୍ଟ କରୁଥିଲେ । ସେମାନେ ବାଟରେ ଅପେକ୍ଷା କରୁଥିବେ - ସେ ଏକାକିନୀ ଗଲେ ପୁଣି କିଛି ଗଣ୍ଡଗୋଳ କରିବେ; ଏଇ ଭୟରେ ସେ ଏକାକିନୀ ନିର୍ଜନ ରାସ୍ତାରେ ଫେରିବା ପାଇଁ ସାହାସ କରିପାରୁ ନଥିଲା । ମତେ ଜୋର କରି ତା ସହିତ ଗୋଟିଏ ରିକ୍‌ସାରେ ବସାଇ ତା ଘର ପର୍ଯ୍ୟନ୍ତ ନେଇଥିଲା । ସେଇ ଝିଅ-ଶ୍ରୀମତୀ ପରିଜା ।

- ତାପରେ ତମ ସହିତ ଆଉ ଦେଖା ହୋଇନି ?

- ହୋଇଛି । ଥରେ ନୁହେଁ ଅନେକ ଥର । ମୁଁ ତାକୁ ପଚାରିଛି - ଆମ କଲେଜର ଦୁଇଜଣ ଛାତ୍ର ତମର କ୍ଷତି କରିପାରନ୍ତି ବୋଲି ତମେ ଭୟ କରୁଥିଲ । କିନ୍ତୁ ମତେ କେଉଁ ବିଶ୍ୱାସରେ ନିଜ ରିକ୍‌ସାକୁ ଡାକି ନେଇଥିଲ-ମୁଁ ବୁଝି ପାରୁନାହିଁ । ମୁଁ ମଧ ତମ ନିଃସଙ୍ଗତାର ସୁବିଧା ନେଇ କିଛି କ୍ଷତି କରିପାରେ - ଏ ଭୟ ତମ ମନକୁ ସ୍ପର୍ଶ କଲାନାହିଁ କିପରି ? ତମେ କଣ ସେଦିନ ଭାବିଥିଲ ମୁଁ ନଖ ଦାନ୍ତହୀନ ଯୁବକ ।

ମୋ କଥା ଶୁଣି ଜିଭକାମୁଡି ପକାଇଥିଲା ଶ୍ରୀମତୀ ।

କହିଥିଲା - ପ୍ରତି ଝିଅ ଗୋଟିଏ ବୟସରେ ପହଞ୍ଚିଲେ ମୁହଁ ଦେଖିଜାଣି ପାରନ୍ତି କେଉଁ ଲୋକ ଭଲ; କେଉଁ ଲୋକ ଲୋଭୀ । ଆଉ ନାରୀ ବିପଦରେ ପଡିଥିଲା ବେଳେ କୌଣସି ନା କୌଣସି ଲୋକ ଉପରେ ତାକୁ ବିଶ୍ୱାସ ରଖିବାକୁ ହୁଏ । ସେଦିନ ସେହି ମୁହୂର୍ତ୍ତରେ ଠିକ୍ ଆପଣ ମୋର ପ୍ରାଣକର୍ତ୍ତା ଦେବଦୂତ ଭଳି ମନେ ହୋଇଥିଲା ।

ମୋ କଥା ଶୁଣି ମନୋରଂଜନ ମନ୍ତବ୍ୟ କରିଥିଲେ -

- ତମ ଉପରେ ମୋର ଈର୍ଷା ହେଉଛି ପ୍ରଫେସର । ଜୀବନର ଅପରାହ୍ନରେ ମଧ ଆଜି ମନେ ପକାଇଲେ ଏଭଳି କଥା ମୁଁ କୌଣସି ନାରୀ ମୁହଁରୁ ଶୁଣିଥିବା ଭଳି ମନେ ପଡୁନାହିଁ । ଆଗରୁ ତମ ସହିତ ଝିଅଟାର ଏଭଳି ଏକ ଅନ୍ତରଙ୍ଗ ପରିଚୟ ଥିଲା ବୋଲି ଜାଣିଥିଲେ ଦଶହଜାର ନୁହେଁ- ମୁଁ କୋଡିଏ ହଜାର ଇନ୍‌ସୁରାନ୍‌ସ କରି ଥାଆନ୍ତି ।

ମନୋରଞ୍ଜନର କଥା ଶୁଣି ସେଦିନ ମୁଁ ମଧ ମନଭରି ହସିଉଠିଥିଲି । ମନୋରଞ୍ଜନ ଘରୁ ଫେରିବା ରାସ୍ତାରେ ମୋର କିପରି ଭୟ ହେଉଥିଲା, ଶ୍ରୀମତୀ ସହିତ ଦେଖା ହୋଇଯିବ । ଏତେଦିନ ପରେ କିପରି ମୁଁ ତାକୁ ଚିହ୍ନି ପାରିଲି ନାହିଁ ବୋଲି ସେ ମତେ ପ୍ରଶ୍ନ କରିବ । କିନ୍ତୁ ସେଭଳି କିଛି ସେଦିନ ଘଟିଲା ନାହିଁ ।

ତା'ପରେ ମଧ ମୁଁ ମନେ ମନେ ତାକୁ ଅପେକ୍ଷା କରିଛି । ସେ ହୁଏତ ଦିନେ ମୋ ଘର ଭିତରକୁ ପଶି ଆସି ଇନ୍‌ସୁରାନ୍‌ସ କରିବା ପାଇଁ ମତେ ପ୍ରବର୍ତ୍ତାଇବ । ନାହିଁ - ନାହିଁ କରି ଶେଷରେ ମୁଁ ଦଶହଜାର କିମ୍ବା ପନ୍ଦର ହଜାର ଟଙ୍କାରେ ମୁଁ ମୋର ଅବଶିଷ୍ଟ ଜୀବନକୁ ଇନ୍‌ସିଓର କରିବି ।

କିନ୍ତୁ ସେଭଳି ମଧ କୌଣସି ଘଟଣା ଘଟିଲା ନାହିଁ । ଆସିଲା ନାହିଁ ଶ୍ରୀମତୀ ।

ଏ ସହରରୁ ସେ କୁଆଡେ ଅନ୍ତର୍ଦ୍ଧ୍ୟାନ ହୋଇଗଲା ?

ଆଉ ଦିନେ ଦେଖାହେବା ମାତ୍ରେ ମନୋରଂଜନ ମତେ କହିଲେ - ହେ ତମେ ଯେଉଁ ଇନ୍‌ସୁରାନ୍‌ସ ଏଜେଣ୍ଟଙ୍କୁ ଶ୍ରୀମତୀ ପରିଜା ବୋଲି କହୁଥିଲ ସେ ଅନ୍ୟଲୋକ । ତାଙ୍କ ଅସଲ ନାମ ମିସେସ୍ ରୂପା

ସାନ୍ୟାଲ । ବଙ୍ଗାଳି ଝିଅ । ମୁଁ ତାଙ୍କୁ ଶ୍ରୀମତୀ ପରିଜା ବୋଲି ସମ୍ବୋଧନ କରି ଖୁବ୍ ଅପଦସ୍ଥ ହେଲି । ତମେ ଯଦି ଚାହଁ - ଇନ୍‌ସୁରାନ୍‌ସ ପାଇଁ ତମ ପାଖକୁ ତାଙ୍କୁ ପଠାଇ ଦେବି ।

ମୁଁ ପଛପଟୁ ଏକ ଗଳାଧକ୍‌କା ଖାଇଲା ଭଳି ଚମକି ଉଠି କହିଲି - କିନ୍ତୁ ଚେହେରା, କଣ୍ଠସ୍ୱର ଠିକ୍ ଶ୍ରୀମତୀ ଭଳି ।

- ଶ୍ରୀମତୀ ପରିଜା ହୋଇଥିଲେ ତମେ ଚିହ୍ନିବା ଆଗରୁ ସେ ତୁମକୁ ନିଶ୍ଚୟ ଚିହ୍ନି ପାରିଥାଆନ୍ତା । କୌଣସି ନାରୀ ତା ଜୀବନର ପ୍ରାଣକର୍ତ୍ତା ଦେବଦୂତଙ୍କୁ ଭୁଲି ପାରେନା । ପାରେ ?

ଅଧ୍ୟାପକ ମନୋରଂଜନ କଥା ଶେଷ କରି ଜିଜ୍ଞାସୁ ଦୃଷ୍ଟିରେ ମୋ ମୁହଁକୁ ଚାହିଁ ରହିଲେ ।

ମୁଁ କିଛି ଉତ୍ତର ଦେଇ ପାରିନଥିଲି ।

ତାଙ୍କର ଯୁକ୍ତି ମୋର କିପରି ଖୁବ୍ ବିଶ୍ୱାସ ଯୋଗ୍ୟ ମନେ ହୋଇଥିଲା ।



# ଯୁଧିଷ୍ଠିରର ପଶା
## ରବି ପଟ୍ଟନାୟକ



ନୀତି-ନିୟମ-ବିରହିତ ଉଚ୍ଛୃଙ୍ଖଳ ଜୀବନ ଯାପନ ଯଦି ମଣିଷର ଗୋଟାଏ ଦୁର୍ବଳତା ହୁଏ, ଅତ୍ୟଧିକ ନ୍ୟାୟପରାୟଣତା, ନୀତିନିଷ୍ଠତା ବି ବୋଧହୁଏ ମଣିଷର ଏକ ଅନ୍ୟ ଧରଣର ଦୁର୍ବଳତା ।

ଦୁହିଁଙ୍କର ବୋଧହୁଏ ପ୍ରେରଣା ଏକ - ଅହଙ୍କାର । ଏକ ବନ୍ଧନ । ଅହଙ୍କାରର ଦୁଇଟି ବାଟ । ଗୋଟାଏ ନୀତି ନିୟମକୁ ଅସ୍ୱୀକାର କରି ନିଜସ୍ୱ ପ୍ରେରଣାରେ ଚାଲିବାର ଓ ଅନ୍ୟଟି ଜୀବନକୁ ଶୃଙ୍ଖଳିତ କରି ଏକ ଆହରିତ ମାନସିକତାରେ ନିର୍ଦ୍ଦିଷ୍ଟ ପଥରେ ଚାଲିବାକୁ ବାଧ୍ୟ କରିବାର ।

ଅଥଚ ଶ୍ରୀ ରଙ୍ଗାଧର କର ଏଇ ଦ୍ୱିତୀୟ ପନ୍ଥାଟିକୁ ବାଛି ନେଇଥିଲେ ସେଇ ପିଲାଟି ବେଳୁ । ହୁଏତ ତାଙ୍କର ମାଷ୍ଟରିଆ ବାପା, ସଭା ପଣ୍ଡିତ ମାମୁଁ, ଶାସନୀ ବ୍ରାହ୍ମଣର ଆଭିଜାତ୍ୟର ପ୍ରତୀକ ଅଜା-ସମସ୍ତେ ତାକୁ ନିଜ ନିଜର ନୀତି ଦଣ୍ଡରେ ଶାସନ କରି କରି ଏମିତି ଗଢ଼ି ଦେଉଥିଲେ ଯେ ରଙ୍ଗାଧର କର ଚାହିଁଲେ ବି ସେଇ ଶୃଙ୍ଖଳ ଭିତରୁ ମୁକୁଳି ପାରି ନଥିଲେ ଜୀବନ ସାରା । ମୋର ତ ମନେହୁଏ ସେଇଟା ଯେ ଏକ ଶୃଙ୍ଖଳ, ଏକ ବନ୍ଧନ ତା ମଧ୍ୟ ସେ ଜାଣି ପାରି ନଥିଲେ ଶେଷ ପର୍ଯ୍ୟନ୍ତ । ଆଜି ଏତେ ଦିନ ପରେ ସେଇ ନିଖୁଣ ମାଖୁନା ମୁହାଁ, ସର୍ବଦା ଗମ୍ଭୀର, ନ୍ୟାୟନିଷ୍ଠ, ଶୃଙ୍ଖଳିତ, ସର୍ବଦା ସତ କଥା କହିବାରେ ଦୀପ୍ତ ଗୌରବର୍ଣ୍ଣ ପୃଥୁଳ ରଙ୍ଗାଧର କରକୁ ସିଧା ସଳଖ, ମୁହଁ ଉପରେ ମୁହଁ ରଖି, ପଚାରିବାକୁ ଇଚ୍ଛା ହେଉଛି "ନନା ତମେ ପାଇଲ କ'ଣ ? ଆମକୁ ଦେଲ କ'ଣ ?"

ସବ୍‌ଡେପୁଟି ମାଜିଷ୍ଟ୍ରେଟ ରଙ୍ଗାଧର କର ।

"ଅନ୍ୟାୟ ଓ ଦୁର୍ନୀତିକୁ ପ୍ରଶ୍ରୟ ଦେବି ନାହିଁ । ସର୍ବଦା ସତ୍ୟ ଓ ଧର୍ମର ମାପ କାଠିରେ ସମସ୍ତଙ୍କୁ ବିଚାର କରିବି, ରାଜା ଓ ପ୍ରଜା ଧନୀ ଓ ଦରିଦ୍ର ମଧ୍ୟରେ ନ୍ୟାୟ ବିଚାରରେ ପାର୍ଥକ୍ୟ ରଖିବି ନାହିଁ । ନ୍ୟାୟ ଓ ସତ୍ୟ ପାଇଁ କାହାରି ଧମକରେ ଡରିଯିବି ନାହିଁ । ସମସ୍ତ ଅସୁବିଧା ସତ୍ତ୍ୱେ ସତ୍ୟ ଓ ନ୍ୟାୟ ପଥରୁ ବିଚ୍ୟୁତ ହେବି ନାହିଁ" ଇତ୍ୟାଦି ଇତ୍ୟାଦି କେତେ ଗୁଡ଼ାଏ ମୁଖସ୍ଥ କରା ନୀତି ବାକ୍ୟକୁ ସମ୍ବଳ କରି ଚାକିରୀ ଜୀବନ ଆରମ୍ଭ କରିଥିଲେ ୧୯୫୪ ମସିହାରେ ।

ପ୍ରଥମ କିଛି ବର୍ଷ ମଧ୍ୟ ସେ ତାଙ୍କର ଏ ନିଷ୍ପତ୍ତି ସତ୍ତ୍ୱେ ବି ଚାକିରୀ ଜୀବନ ବେଶ୍ ନିର୍ବିବାଦରେ କଟାଇ ଦେଉଥିଲେ । କିନ୍ତୁ ଧୀରେ ଧୀରେ ଯେମିତି ସବୁ ବଦଳିଯିବାକୁ ଆରମ୍ଭ କଲା ୧୯୬୦ ମସିହା ପ୍ରାରମ୍ଭରୁ । ପ୍ରଥମ କୌଣସି ଗୋଟାଏ ବିଷୟ ନେଇ ମନାନ୍ତର ଆରମ୍ଭ ହୁଏ ତତ୍କାଳୀନ ଏମ.ଏଲ୍.ଏ.ଚିନ୍ତାମଣି ଶତପଥୀଙ୍କ ସହିତ । ସେ ବିଷୟ କିନ୍ତୁ ସେତିକିରେ ସୀମିତ ରହିଲା ନାହିଁ । ସେ ମନାନ୍ତର କ୍ରମଶଃ ଉଚ୍ଚକୁ ଉଚ୍ଚକୁ ଉଠି ପହଞ୍ଚିଗଲା ଖୋଦ୍ ମନ୍ତ୍ରୀଙ୍କ ପାଖରେ ।

ରଙ୍ଗାଧର କର ମୁଣ୍ଡ ନୁଆଁଇବାର ପାତ୍ର ନୁହଁନ୍ତି । ଅତଏବ ଆରମ୍ଭ ହୋଇଗଲା ବଦଳିର ପାଳା । କୋରାପୁଟରେ ଦି ବର୍ଷ ନ ରହୁଣୁ ଢେଙ୍କାନାଳ । ସେଠାରେ ବର୍ଷେ ନ ପୂରୁଣୁ ଗଞ୍ଜାମ । ସେଠାରେ ଛଅମାସ ନ ଯାଉଣୁ ସମ୍ବଲପୁରର କେଉଁ ଗୋଟାଏ ଜାଗା ।

ତିନି ଘରି ଜାଗାରେ ସେ ତଥାପି ଆମ ସମସ୍ତଙ୍କୁ ନେଇ ବୁଲିଥିଲେ । ଶେଷକୁ ଆଉ ପାରିଲେ ନାହିଁ । ପୁରୁଣା ଭୁବନେଶ୍ୱର ପୈତୃକ ବାସଗୃହରେ ପରିବାର ଛାଡ଼ିଦେଇ ରଙ୍ଗାଧର ସାଜିଲେ ବଦ୍ଧକ ସନ୍ନ୍ୟାସୀ ।

ବଦଳି ତ କରିବେ କରନ୍ତୁ । କିନ୍ତୁ ତା ବୋଲି ସତ୍ୟକୁ ନ୍ୟାୟକୁ ପରିତ୍ୟାଗ କରିଦେବେ ? ମୁଣ୍ଡ କଟିଯାଉ କିନ୍ତୁ ସେ ହାର ମାନିବେ ନାହିଁ । ଅନ୍ୟାୟ ଆଗରେ, କ୍ଷମତା ଆଗରେ ମୁଣ୍ଡ ନୁଆଁଇବେ ନାହିଁ ।

ଅଗତ୍ୟା ତିନି ଭଉଣୀ ଓ ଦୁଇଭାଇଙ୍କୁ ନେଇ ବୋଉ ରହିଲା ଭୁବନେଶ୍ୱରରେ ।

ଘନ ଘନ ବଦଳି ଯୋଗୁଁ ପେସ୍ଲିପ ଶୀଘ୍ର ମିଳେ ନାହିଁ । ଦରମା ବନ୍ଦ ହୋଇଯାଏ ତିନି ଘରିମାସ । କେତେ ଅଭାବ ଓ ଦୁଃଖ କଷ୍ଟରେ ଯେ ସେତେବେଳେ ଆମେ କାଳ କାଟିଛୁ ସେ କଥା ଆମେ ଜାଣୁ । ମୋ ଉପର ଦୁଇଜଣ ଭଉଣୀ ମୋ ତଳେ ଆଉ ଜଣେ । ସାନ ଭାଇ ସମସ୍ତଙ୍କଠୁ ଛୋଟ ।

ଦିନେ ଦିନେ ଖାଇବା ପାଇଁ ଘରେ ଖୁଦ୍ ଗଣ୍ଡାଏ ବି ନଥାଏ । ଦୋକାନୀ ବାକୀରେ ଦେବାକୁ ମନା କରିଦିଏ । କେତେବେଳେ କେତେବେଳେ ମାମୁଁ ବସ୍ତାଏ କି ଦି ବସ୍ତା ଘଉଳ ଆଣି ପକେଇ ଦିଅନ୍ତି । ସେଇଥିରେ ଭାଇ ଭଉଣୀଙ୍କ ପେଟରେ ଆହାର ପଡେ । ପଖାଳ ଲଙ୍କା ଛଡ଼ା ମାସ ମାସ ଧରି ଆମ ଘରେ ଆଉ କିଛି ରୋଷେଇ ହୁଏନାହିଁ । ଆମେ ତିନିଜଣ ସେତେବେଳକୁ ସ୍କୁଲରେ ପଢୁଥାଉ । ବହିପତ୍ର ଅଭାବରୁ, ଖାତା ଅଭାବରୁ ପଢ଼ା କରି ନଥିବାରୁ ସ୍କୁଲରେ ଦଣ୍ଡ ପାଉଁ । ନାନୀ ସେତେବେଳକୁ ବଡ ହୋଇଯାଇଥାଏ । ଛିଣ୍ଡା ଫ୍ରକରୁ ଛାତି ଦିଶିଯାଏ ବୋଲି କରିଆ ଖଣ୍ଡେ ଗୁଡେଇ ହୋଇ ସେ ସ୍କୁଲକୁ ଯାଏ । ମୋର ଦୁଇଖଣ୍ଡି ପେଣ୍ଟ । ସେତକ ପିଚ୍ଛ ପାଖରେ ପାଞ୍ଚଟା ତ୍ଵାଳି ପଡିଥାଏ ବୋଲି ମୁଁ କେବେ ଶାର୍ଟ ଇନ୍ କରିପାରେ ନାହିଁ । ମୋ ଠାରୁ ବଡ଼ ଶାର୍ଟ ପିନ୍ଧି ସ୍କୁଲକୁ ଯାଏ ।

ବୋଉ ପ୍ରଥମ ପ୍ରଥମ ଭାରି କାନ୍ଦୁଥିଲା । କାହାପୁଅ, କାହା ନାନୀ ? କୋଉ ବେଶରେ ସ୍କୁଲକୁ ଯାଉଛନ୍ତି । କୋଉ ଖାଦ୍ୟ ଖାଉଛନ୍ତି ବୋଲି ଦିନେ ଦିନେ ଡକା ପାରି କାନ୍ଦେ । ପଛକୁ ପଛ ସେ ବି ପଥର ହୋଇଗଲା । କିଛି କହେ ନାହିଁ । ଦିନରାତି ଖଟୁଥାଏ ମୁହଁକୁ ପୋତି । ସାତସିଆଁ ଛିଣ୍ଡା ଶାଢ଼ୀ, ପିନ୍ଧି, ଦେହମୁଣ୍ଡ ଦେଖେଇ ସେ ଘର ଭିତରୁ ବାହାରକୁ ବାହାରିବ କେମିତି ଯେ ?

ତିନି ଘରି ମାସ ପରେ ନନା ଆସନ୍ତି । ଧାର ଦେଣାପରିଶୋଧ କରନ୍ତି । ସମସ୍ତଙ୍କ ପାଇଁ ଖଣ୍ଡିଏ ଖଣ୍ଡିଏ ନୂଆ ଲୁଗା କିଣି ଦିଅନ୍ତି । ବହିପତ୍ର କିଣି ଦିଅନ୍ତି । ସେଇ କେତେ ଦିନ ଆମ ଘରକୁ ପରିବା ପତ୍ର, ମାଛ ମାଉଁସ ଆସେ । ସେ ପୁଣି ଫେରନ୍ତି ଆଉ ତିନି କି ଘରି ମାସ ପରେ ।

ନାନୀ ମାଟ୍ରିକ୍ ପାଶ୍ କଲା ଫାଷ୍ଟ ଡିଭିଜନରେ । କିନ୍ତୁ ସେ ଆଉ କଲେଜରେ ପଢ଼ି ପାରିଲା ନାହିଁ । ବର୍ଷେ ଖଣ୍ଡେ ଘରେ ବସିଲା ପରେ ସେ ଗଲା ସିଟି ଟ୍ରେନିଂ ପଢ଼ିବାକୁ ସିଟି ଟ୍ରେନିଂ ପରେ ପୁଣି ଘରେ ବସିଲା ବର୍ଷେ । ତା ପରେ କୋଉ ଗୋଟାଏ ପ୍ରାଇଭେଟ୍ ସ୍କୁଲରେ ମାଷ୍ଟ୍ରାଣୀ ଘକିରୀ ପାଇ ସେ ଗଲା ଘକିରୀ କରିବାକୁ । ସେଥିପାଇଁ କଣ କମ୍ ପାଲା ଆମ ଘରେ ? ବୋଉର ଏକ ଜିଦ୍ ସେ ଘକିରୀ କରିବ ନାହିଁ । ବାପାଙ୍କର ଏକା ଜିଦ୍ ସେ ଘକିରି କରୁ । ନିଜ ଗୋଡ଼ରେ ଛିଡ଼ା ହେଉ । ମାମୁଁ ଆସି ପାଟିକଲେ "ବଢ଼ିଲା ଝିଅଟା- ସେ ଘରୁଗୋଡ଼ କାଢ଼ି କୋଉ ଜାଗାରେ ଏକଲା ରହିବ କେମିତି ? ଆମ କୂଳରେ ଏମିତି ବୁନିଆଦୀ ବଂଶର ଝିଅ ହୋଇ ଘକିରୀ କରିବ କେମିତି ? କୂଳ କୁଟୁମ୍ବକୁ ଲାଜ । ପରିବାରର ମାନ ମର୍ଯ୍ୟାଦା ସବୁ ତଳେ ପଡିଯିବ । ପୁଣି ଏ ଝିଅକୁ ତ ବାହା କରିବ ନା ନାଇଁ ? ଏ ଘକିରୀ କଲା ଝିଅକୁ ବାହା ହେବ କିଏ ? ବାସନ୍ଦ ହୋଇଯିବ ସାରା ବ୍ରାହ୍ମଣ ସମାଜରେ ।"

କେତେ କଥା । କେତେ ଯୁକ୍ତି । ବାପାଙ୍କର ସେଇ ଏକାକଥା । ଶେଷକୁ ନାନୀ ଘକିରୀ କଲା । ପଇଁଘାଳିଶ ବର୍ଷ ହେଲାଣି ତାକୁ । ଏବେ ସେ ଗଭର୍ଣ୍ଣମେଣ୍ଟ ହାଇସ୍କୁଲରେ ପ୍ରଧାନ ଶିକ୍ଷୟତ୍ରୀ । ବାପାଙ୍କର ଜିଦ୍ ନେଇ ସେ ଜନ୍ମ ନେଇଛି । ସେମିତି ପ୍ରାଇଭେଟ୍ ପରୀକ୍ଷା ଦେଇ ଏମ୍.ଏ. ପାଶ୍ କଲା ସେ ।

ଏ ପର୍ଯ୍ୟନ୍ତ ଅବିବାହିତା । ଆଉ କଣ ସେ ବାହା ହେବ ଯେ! ସାନ ନାନୀକୁ ସେ ସାଙ୍ଗରେ ନେଇ ଯାଇଥିଲା ଚାକିରି ଜାଗାକୁ । "ମୁଁ ସିନା ପଢ଼ି ପାରିଲି ନାହିଁ । ଇନ୍ଦୁକୁ ନିଶ୍ଚେ ବି.ଏ. ପଢ଼ାଇବି ।"

ବୋଉର ଜିଦ୍ ଭାଙ୍ଗିଗଲା । ତାର ପୁରାତନର ଗାରିମା । ବଂଶର ଗୌରବ, କୁଳର ମର୍ଯ୍ୟାଦାର, ଉଚ୍ଚ ପ୍ରାସାଦ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା ତା ଆଖି ଆଗରେ । ସେ ମୂକ ହୋଇଗଲା । ପ୍ରତିବାଦ କରେ ନାହିଁ । କିଛି ଆଶା କରେ ନାହିଁ । ଖାଲି ଯେମିତି କଳ କଣ୍ଢେଇ ଟିଏ ।

ଇତି ମଧ୍ୟରେ ରଙ୍ଗାଧର କର ଆହୁରି ନିର୍ମମ, କଠୋର ହୋଇ ଉଠିଲେ ନିଜ ବ୍ରତ ପାଳନରେ ।

ସମଗ୍ର ଓଡ଼ିଶାରେ ଦୁର୍ନୀତି ସେତେବେଳେ ତାର ପ୍ରକାଣ୍ଡ ପକ୍ଷ ବିସ୍ତାର କରି ମାଡି ଆସୁଥାଏ । ଧୀରେ ରାଜନୀତି, ଚାକିରି, ଶିକ୍ଷା ସବୁଥିରେ ପ୍ରବଳ ପରାକ୍ରମରେ ସେ ତାର ଆସନ ବିସ୍ତାର କରୁଥାଏ । କଳୁଷିତ ରାଜନୀତି, ପକ୍ଷପାତ ବିଚାରରେ ଆତଙ୍କିତ ବିଚାର ପ୍ରଣାଳୀ, ଶାସନ, ଓ ଶିକ୍ଷା । ଯେତିକି ଯେତିକି ଦୁର୍ନୀତି ବଢୁଥାଏ ରଙ୍ଗାଧର କର ସେତିକି ସେତିକି ନ୍ୟାୟନିଷ୍ଠ, ସତ୍ୟ ନିଷ୍ଠ ହୋଇ ଉଠୁଥାନ୍ତି ।

ଦୁର୍ନାମର ଆରମ୍ଭ ହୋଇଗଲା ।

ରଙ୍ଗାଧର କର ଗୋଟାଏ ଛେନାରୁ ଚ଼େପା ଛଡ଼ାଇବା ଲୋକ ।

ଗୋଟାଏ ଅନୁଶାସନ ହୀନ କର୍ମଚାରୀ ।

ଗୋଟାଏ ଅମାନିଆ ଲୋକ ।

ଗୋଟାଏ ଅହଙ୍କାରୀ, ଉଗ୍ର ଜାତିଆଣବାଦୀ ବ୍ରାହ୍ମଣ ।

ସରକାରୀ ଦଳର ବିରୋଧକାରୀ । ବିରୋଧ ଦଳର ଦଲାଲ୍ ।

ନ୍ୟାୟନିଷ୍ଠ, କର୍ତ୍ତବ୍ୟନିଷ୍ଠ, ସତ୍ୟବାଦୀ, ନିର୍ଭୀକ ରଙ୍ଗାଧର କର ଧୀରେ ଧୀରେ ପରିଣତ ହୋଇଗଲେ ଏକ ଅପାଙ୍‌କ୍ତେୟ ବ୍ୟକ୍ତି ଭାବରେ । ତାକୁ ଫୁଲବାଣୀକୁ ପନିସ୍‌ମେଣ୍ଟ ଟ୍ରାନସ୍ ଫର କର । କୋରାପୁଟ୍‌ର ଦୁର୍ଗମ ଅଞ୍ଚଳକୁ ଠେଲି ଦିଅ । ତାର ଗୁପ୍ତ ଚରିତ୍ର ପତ୍ରରେ ଲିପିବଦ୍ଧ କରିଦିଅ, ଇନ୍‌ଡିସିପ୍ଲିନ୍‌ଡ ଅଫିସର୍, ଭାବରେ । କଳିହା, ବଦ୍ ରାଗୀ, ଅମାନିଆ, ଦାମ୍ଭିକ ଅପାରଗ କର୍ମଚାରୀ ଭାବରେ ।

ବଡ଼ ନାନୀର ଦୟାରୁ ବି.ଏ. ପାଶ୍ କଲା ସାନନାନୀ । କିନ୍ତୁ ସେ ଘରେ ଆଉ ରହିପାରିଲା ନାହିଁ । ସେ ପ୍ରେମ ବିବାହ କଲା ସେଇ କଲେଜର ଜଣେ କରଣ ଅଧ୍ୟାପକକୁ ।

ବୋଉ ଶୁଣି ସାରି କିଛି କହିଲା ନାହିଁ । ଠାକୁର ଘରେ ଅଖିଆ ଅପିଆ ପଡି ରହିଲା । ସାରାଟା ଦିନ ସାରାଟା ରାତି । ନନାଙ୍କ ପ୍ରତିକ୍ରିୟା ଜାଣିବା ପାଇଁ ଆମର ବାଟ ନଥିଲା । ସେ ଖବର ପାଇଲେ ପ୍ରାୟ ପନ୍ଦରଦିନ ପରେ । ଘରକୁ ଫେରିଲେ ନାନୀ ବାହାଘରର ତିନିମାସ ପରେ, ସାନ ନାନୀ କଥା ସେ ସେଇଦିନୁ ଥରକ ପାଇଁ ଉଠାଇ ନାହାନ୍ତି ମଲା ପର୍ଯ୍ୟନ୍ତ ।

ସେତେବେଳେ ମୁଁ ମେଡିକାଲ୍‌ରେ ସିଟ୍ ପାଇଲି । କିନ୍ତୁ ଟଙ୍କା ଅଭାବରୁ ଆଡ୍‌ମିଶନ ନେଇ ପାରିଲିନି । ଆଡ୍‌ମିଶନ୍ ନେବି ବୋଲି ଆଉ ବି.ଏସ.ସି. ଦରଖାସ୍ତ କରିନଥିଲି । ମେଡିକାଲରେ ଯିବାହେଲା ନାହିଁ । ମୁଁ ଟାଇପି ଶିଖିଲି । ଆଉ ଯେଉଁ କୋର୍ଟରେ ନନା ଦିନେ ବିଚାରପତି ଥିଲେ ସେଇ କୋର୍ଟରେ ମୁଁ କିରାଣୀ ହୋଇ ପଶିଗଲି ।

ଭଗବାନଙ୍କର ବୋଧହୁଏ ଏ ଆଶୀର୍ବାଦ । କାରଣ ତା ପର ବର୍ଷ ହିଁ ମାତ୍ର ପଚାଶ ବର୍ଷ ବୟସରେ କଳିହା, ଅମାନିଆ, ଶୃଙ୍ଖଳହୀନ କର୍ମଚାରୀ ରଙ୍ଗାଧର କରଙ୍କର ବାଧ୍ୟତାମୂଳକ ଅବସର ହୋଇଗଲା ବିନା ମେଘରେ ବ୍ରଜପାତ ପରି ।

ସେଇ ଶେଷଥର ପାଇଁ ମୁଁ ଦେଖିଥିଲି ରଙ୍ଗାଧର କରଙ୍କ ମୁହଁରେ ପରାଜୟର ଗ୍ଲାନି । ଦୁଃଖ ଓ ଅବସାଦ । ସେ ସେଇ ଦୁଃଖର ଧକ୍‌କା ବୋଧହୁଏ ସମ୍ଭାଳି ପାରିଲେନି । ଅବସର ପାଇବାର ମାତ୍ର ଛଅଟା ମାସ ଭିତରେ ସେ ଇହଧାମ ପରିତ୍ୟାଗ କଲେ ।

ତାଙ୍କର ଜୀବିତାବସ୍ଥାରେ ଦିନେ ହେଲେ ତାଙ୍କ ସାମ୍ନାରେ ମୁଣ୍ଡଟେକି ଚାଲିନାହିଁ । ମୁହଁଟେକି କଥା କହିନାହିଁ । କିନ୍ତୁ ସେ ଦିନର ମୃତ ଗଙ୍ଗାଧର କରଙ୍କର ଶବଦେହର ମୁହଁଟିକୁ ପ୍ରଥମ ଥର ପାଇଁ ବହୁ ସମୟ ଧରି ନିରୀକ୍ଷଣ କରିବାର ସୁଯୋଗ ପାଇଥିଲି । ଶାନ୍ତ, ଗମ୍ଭୀର ମୁହଁଟାରେ ଲାଖି ରହିଥିଲା ଏକ ଅସହାୟ କରୁଣାର କ୍ଷୀଣ ପରଦା । ସେଇ ମୁହଁଟିକୁ ନିରୀକ୍ଷଣ କରୁ କରୁ ମୁଁ ପ୍ରଶ୍ନ କରିଥିଲି "ନନା, ତମର ଏ ସଂଗ୍ରାମରେ ପାଇଲ କ'ଣ ? ଆମକୁ ବା ଦେଲ କଣ ? ତମର ଏଇ ନ୍ୟାୟ ଅନ୍ୟାୟର ପଶାଖେଳରେ ଆମେ ଯେ ସର୍ବସ୍ୱାନ୍ତ ହୋଇଗଲୁ ।" ମୋର ମନେହେଲା ସେଇ ଶାନ୍ତ ମୁହଁଟା ଯେମିତି କ୍ଷଣିକ ପାଇଁ ଥରି ଉଠିଲା । ଆଉ ନିଃଶବ୍ଦରେ କହିଲା "ମୁଁ ହାରି ଯାଇଛି ସତ, କିନ୍ତୁ ନଇଁ ଯାଇନାହିଁ । ଭାଙ୍ଗି ପଡିଛି ସତ ପ୍ରତିରୋଧ କରି ପଳାୟନ କରି ନୁହେଁ । ମୋର ଏ କାରୁଣ୍ୟ ଅବସାଦ ନୁହେଁ, ହତାଶା ନୁହେଁ । ଏହା କେବଳ ପଥଶ୍ରମର କ୍ଳାନ୍ତି-ପରାଜୟ ନୁହେଁ । ସତ୍ୟ କେବେ ହାରେ ନାହିଁ ।"

ଆଉ କେତେ କଷ୍ଟ ଦୁଃଖ ପାଇଥିଲେ ଗଙ୍ଗାଧର କର ପରାଜୟ ମାନିଥାନ୍ତା କେଜାଣି ? କିଛି ବୁଝିହୁଏ ନାହିଁ ଏଇ ପରି ଲୋକମାନଙ୍କୁ ।

ସାଧାରଣ ଜୁଆଡୀଟିଏ ପଶା ଖେଳେ । ହାରେ ଓ ଜିତେ । କିନ୍ତୁ ଯୁଧିଷ୍ଠିରର ପଶା ଖେଳରେ କେବଳ ହାରିବାଟା ହିଁ ନିଶ୍ଚିତ। ବଡ଼ ନିର୍ମମ ଏ ପଶାଖେଳ । ଏଥିରେ ରାଜ୍ୟ ଚାଲିଯାଏ, ଧନ ଚାଲିଯାଏ, କ୍ଷମତା ଚାଲିଯାଏ, ଭାଇମାନେ ଚାଲିଯାଆନ୍ତି । ନିଜର କୂଳବଧୂକୁ ବି ହାରି ହୋଇଯାଏ । ରିକ୍ତ, ନିଃସ୍ୱ ହୋଇଯାଏ ମଣିଷ। କଠୋର ବନବାସ ଓ ପରିଶେଷରେ ଅଜ୍ଞାତ ବାସ ତାର କପାଳରେ ନିର୍ମମ ଭାବରେ ଲେଖି ହୋଇଯାଏ । ତଥାପି ବି ଯୁଧିଷ୍ଠିରମାନେ ସବୁଯୁଗରେ, ସବୁ କାଳରେ ଏମିତି ପଶା ଖେଳିବାକୁ ଭଲ ପାଆନ୍ତି । କାହିଁକି କେଜାଣି ?

ଗଙ୍ଗାଧର କର । ଏବେ ତମର ଅଜ୍ଞାତ ବାସ । କେବେ ଫେରିବ କେଜାଣି ? ତେର ବର୍ଷ ତେର ଶତାବ୍ଦୀ ନା ତେର ମନ୍ୱନ୍ତର ପରେ ?

କାହିଁକି କେଜାଣି କିଏ ଯେମିତି ଏଇ ବିଶ୍ୱାସ ଦେଉଛି ତମେ ନିଶ୍ଚେ ଫେରିବ ।



# ଜୟନ୍ତୀ

## ବିଜୟକୃଷ୍ଣ ମହାନ୍ତି



ସେଦିନ ମୁଁ କବି ବିଦ୍ୟାଧର ଗଡ଼ନାୟକଙ୍କ ନିକଟରେ ପହଞ୍ଚି ସିଧାସଳଖ ତାଙ୍କୁ ପ୍ରଶ୍ନ କଲି, ପ୍ରତିବର୍ଷ ଆପଣ ନିଜ ଚେଷ୍ଟାରେ ନିଜର ଜୟନ୍ତୀ ପାଳନ କରୁଛନ୍ତି ନିଜ ଗ୍ରାମରେ ଓ ଓଡ଼ିଶାର ବିଭିନ୍ନ ସ୍ଥାନମାନଙ୍କରେ । ମାତ୍ରାଧିକ କାଳ ଏ ଜୟନ୍ତୀ ପାଳିତ ହେଉଛି, ସବୁ ସ୍ଥାନକୁ ଯାଇନପାରିଲେ ବି କଟକ ପରି ବିଶେଷ କେତେକ ସ୍ଥାନକୁ ଯାଇ ଆପଣ ଅଭିନନ୍ଦନ ଗ୍ରହଣ କରୁଛନ୍ତି ଓ ନିଜର ସ୍ତୁତିଗାନ କରୁଛନ୍ତି । ମାତ୍ର ମୁଁ ପଚାରେ ଏଥିରୁ ଆପଣ ପାଉଛନ୍ତି କ'ଣ ? ପୂର୍ବ କାଳରେ ରାଜାମାନେ ଭାଟ ରଖିଥିଲେ, ସେମାନେ ଅନ୍ଧଭାବେ ରାଜାମାନଙ୍କର ଗୁଣଗାନ କରୁଥିଲେ ଓ ନିର୍ବୋଧ ରାଜାଗଣ ତାହା ଶୁଣି ଅଯଥା ଆତ୍ମପ୍ରସାଦ ଅନୁଭବ କରୁଥିଲେ । ମାତ୍ର ଆପଣତ ନିର୍ବୋଧ ନୁହନ୍ତି । ଆପଣ କବି, ଚିନ୍ତାନାୟକ । ଅଥଚ ଆପଣ ଏପରି ବ୍ୟାଧିଗ୍ରସ୍ତ ହେଲେ କିପରି ?

କବି ଗଡ଼ନାୟକ ମୋର ଏ ହଠାତ୍ ଆକ୍ରମଣରେ ହତଭମ୍ବ ହୋଇଗଲେ । ମାତ୍ର ପରମୁହୂର୍ତ୍ତରେ ନିଜକୁ ସମ୍ବରଣ କରିନେଇ ନିଜ ମୁଣ୍ଡର ପକ୍ୱକେଶରେ ବାମହାତ ବୁଲାଉ ବୁଲାଉ ସ୍ଖଳିତ ବଚନରେ ପ୍ରଶ୍ନ କଲେ, ଆପଣଙ୍କ ପରିଚୟ ମୁଁ ଜାଣିପାରେ କି ? ଧରି ନିଅନ୍ତୁ ମୋର ନାମ ବିପ୍ଳବୀ ଦାସ । ମୁଁ ଆପଣଙ୍କ କବିତାର ଜଣେ ମୁଗ୍ଧ ପାଠକ । ଆପଣଙ୍କ ସମ୍ପର୍କରେ ମୋର ଧାରଣା ଅନେକ ଉଚ୍ଚରେ । ମୋର ହୃଦୟ ସିଂହାସନରେ ଆପଣ ଅନେକ ଦିନୁ ଅଧିଷ୍ଠିତ । ମାତ୍ର ସେ ସିଂହାସନରୁ ଆପଣ ବିଚ୍ୟୁତ ହେବେ ତାହା ମୁଁ ବରଦାସ୍ତ କରିବି କିପରି ? ଜାତି ଯେତେବେଳେ ମୋ ଜୟନ୍ତୀ ପାଳନ କରୁନାହିଁ, ସେତେବେଳେ ନିଜ ଜୟନ୍ତୀ ନିଜେ ପାଳନ କରିବାଟାକୁ ଆପଣ ଦୋଷାବହ କାର୍ଯ୍ୟ ବୋଲି ମନେ କରୁଛନ୍ତି କି ? କବି ଗଡ଼ନାୟକଙ୍କ କଣ୍ଠରେ ବିଦ୍ରୋହର ସୂଚନା ।

ମାତ୍ର ସେ ଜୟନ୍ତୀ ପାଳନ ଦ୍ୱାରା ଆପଣ ପାଉଛନ୍ତି କ'ଣ ? ମୁଁ କ୍ଷୁବ୍ଧ କଣ୍ଠରେ ପ୍ରଶ୍ନ କଲି, ଅନ୍ୟ ତୁଣ୍ଡରେ ନିଜର ପ୍ରଶସ୍ତି ଶୁଣି ଯଦି ଆପଣ ସାମୟିକ ଆନନ୍ଦ ପାଉଥାନ୍ତି; ତେବେ ମୋର ଅବଶ୍ୟ କିଛି କହିବାର ନାହିଁ । ମାତ୍ର ଆପଣ କ'ଣ ଏହି ସୀମିତ, ସଂକୀର୍ଣ୍ଣ ଆନନ୍ଦ ଲାଭ କରିବାକୁ ଏତେ ବ୍ୟାକୁଳ ? ଆଜକୁ ଦୀର୍ଘ ଦର୍ଶବର୍ଷ ଧରି ମୁଁ ଲକ୍ଷ୍ୟ କରିଆସୁଛି ଆପଣ ଆଉ କିଛି ଲେଖିପାରୁନାହାନ୍ତି । ଆଉ ଚେଷ୍ଟା କରି କଦବା କ୍ୱଚିତ ଯାହା ଲେଖୁଛନ୍ତି ସେସବୁ ଆପଣଙ୍କ ଲେଖନୀ ପ୍ରସୂତ କବିତା ବୋଲି ତ ଆଦୌ ମନେ ହୁଏନାହିଁ । ମାତ୍ର ଯାହା ଆପଣ ଲେଖିଯାଇଛନ୍ତି ସେ ସମସ୍ତ ଜାତୀୟ ସମ୍ପତ୍ତି ହୋଇ ରହିଯାଇଛି । ମୋ ପରି ଆପଣଙ୍କ କବିତାର ଶତ ଶତ ମୁଗ୍ଧ ପାଠକଙ୍କ ହୃଦୟରେ ଆଜି ଆପଣ ରାଜା ହୋଇ ରହିଛନ୍ତି ଓ ସେମାନଙ୍କ ଅନ୍ତରର ନିଭୃତ କୋଣରେ ପ୍ରତିମୁହୂର୍ତ୍ତରେ ଆପଣଙ୍କ ଜୟନ୍ତୀ ପାଳିତ ହେଉଚି । ସେ ସ୍ୱେଚ୍ଛାକୃତ ଶାଶ୍ୱତ ଜୟନ୍ତୀ ପାଳନ ତୁଳନାରେ ଆପଣଙ୍କର ଏହି ଚେଷ୍ଟାକୃତ କୃତ୍ରିମ ଜୟନ୍ତୀ ପାଳନ କେତେ ଅକିଞ୍ଚିତକର

ସତେ । କବି ଗଡ଼ନାୟକ ମୁହୂର୍ତ୍ତ କେତେକ ମୋତେ ନିଷ୍ପଲକ ଦୃଷ୍ଟିରେ ଅନାଇ ରହିବା ପରେ ବ୍ୟଥିତ କଣ୍ଠରେ ହଠାତ୍ ପ୍ରଶ୍ନ କଲେ, ଆଚ୍ଛା କହିଲେ ପୂର୍ବଭଳି ମୁଁ କାହିଁକି ଆଉ ଲେଖିପାରୁନାହିଁ ?

କାରଣ ଅବଶ୍ୟ ରହିଛି, ଆତ୍ମବିଶ୍ଳେଷଣ ଦ୍ୱାରା ହିଁ ତାହା ଉପଲବ୍ଧି ହେବ । ମୁଁ ଆବେଗପୂର୍ଣ୍ଣ କଣ୍ଠରେ କହିଲି, ଯାହାଙ୍କ କୃପାରୁ କଣ୍ଠରେ ଆପଣଙ୍କ କବିତା ସ୍ଫୁରଣ ହେଲା, ସମୟ କ୍ରମେ ତାଙ୍କୁ ହୁଏତ ଆପଣ ପାସୋରି ଗଲେ । ଡୋରିର ସହାୟତାରେ ଗୁଡ଼ି ଆକାଶରେ ଉଡ଼େ । ମାତ୍ର ଡୋରିର ପ୍ରାଧାନ୍ୟକୁ ଭୁଲିଯାଇ ଗୁଡ଼ି ଯେତେବେଳେ ସ୍ୱତନ୍ତ୍ର ହେବାକୁ ଚେଷ୍ଟା କରେ, ସେତେବେଳେ ହିଁ ତାର ପତନ ହୁଏ । ଡୋରି ହୁଡ଼ିଗଲେ ଆକାଶରେ ଗୁଡ଼ିର ସ୍ଥିତି ଆଉ କେତେକ୍ଷଣ ? ଆପଣଙ୍କ ମନରେ ହୁଏତ ଅସୂୟା ଜାତ ହୋଇଛି ଅନ୍ୟମାନଙ୍କର କବି ପ୍ରତିଭା ପ୍ରତି, ଯାର ପରିଣତି ଆପଣଙ୍କର ନୂତନ ସୃଷ୍ଟି ପଥରେ ଠିଆ ହୋଇଛି ଘୋର ଅନ୍ତରାୟ ହୋଇ । ବୟସର ଅଗ୍ରଗତି ସଙ୍ଗେ ସଙ୍ଗେ ଚିନ୍ତାର ବିକାଶ ଘଟୁଛି, ଅଥଚ ଲେଖନୀ ମାଧ୍ୟମରେ ତାର ସ୍ଫୁରଣ ନ ହେବାର କାରଣ ଆଉ କଣ ହୋଇପାରେ ?

ଈଶ୍ୱର ଏକମାତ୍ର ପୁରୁଷ, ତାଙ୍କ ବ୍ୟତୀତ ଅନ୍ୟ ସମସ୍ତେ ପ୍ରକୃତି । ସେ ଏକମାତ୍ର କବି, ଆଉ ଆମ୍ଭେମାନେ ସମସ୍ତେ କବିତା । ସେ ଏକମାତ୍ର ଗାୟକ, ଆମ୍ଭେମାନେ ସମସ୍ତେ ଗୀତ । ଏକମାତ୍ର ଚିତ୍ରକର ସେ, ଆଉ ଆମ୍ଭେମାନେ ସମସ୍ତେ ଚିତ୍ର । ତେଣୁ କେଉଁ କବି, କେଉଁ ଗାୟକ, କେଉଁ ଚିତ୍ରକର କାହାକୁ ବା ତାର ପ୍ରତିଦ୍ୱନ୍ଦୀ ମନେ କରିବ ? ରବୀନ୍ଦ୍ରନାଥ ତ ତେଣୁ ଭାବବିହ୍ୱଳ ହୋଇ ଗାଇଛନ୍ତି -

"ତୁମି କ୍ୟାମନ କରେ ଗାନ କର ହେ ଗୁଣୀ,
ଆମି ଶୁନି ସବୁ ଅବାକ୍ ହୁଏ ଶୁନି ।"

ଏହି ଅବାକ୍ ହୋଇ ଶୁଣିବାରର ଅର୍ଥ ହେଲା ତାଙ୍କ ପାଖେ ନିଜକୁ ସମର୍ପଣ କରିଦେବା । ଦ୍ରୌପଦୀଙ୍କ ଭଳି ଦୁଇ ହାତ ଟେକି ବସ୍ତ୍ର ଭିକ୍ଷା ନକଲେ ସେ କାହିଁକି ଲଜ୍ଜା ନିବାରଣ କରିବାକୁ ଆଗେଇ ଆସିବେ । ଜୀବନର ପ୍ରତି ମୁହୂର୍ତ୍ତରେ ଆମ୍ଭେମାନେ ତ ଦୁର୍ଯ୍ୟୋଧନର ଇଙ୍ଗିତରେ ଦୁଃଶାସନ ଦ୍ୱାରା ଉଲଗ୍ନ ହେଉଛେ, ମାତ୍ର ଦୁଇ ହାତ ଟେକି ତାଙ୍କୁ ବସ୍ତ୍ରଭିକ୍ଷା କରିପାରୁନେ ବୋଲି ଲଜ୍ଜା ନିବାରଣ ହେଉନାହିଁ ତ ଆମ୍ଭମାନଙ୍କର । ମୋର ବକ୍ତବ୍ୟର ବିହ୍ୱଳତାକୁ କବି ଗଡ଼ନାୟକ ଠିକ୍ ଠିକ୍ ଉପଲବ୍ଧି କଲେ କି ନାହିଁ କେଜାଣି, ମୁହୂର୍ତ୍ତ କେତେକ ଅନ୍ୟମନସ୍କ ରହିବା ପରେ ହଠାତ୍ କହି ଉଠିଲେ, ମୁଁ ଯଦି କହେ ମୋ ସମ୍ପର୍କରେ ଆପଣଙ୍କ ଅନୁମାନ ସତ୍ୟ ନୁହେଁ । ତେବେ ଆପଣଙ୍କୁ ବୁଝାଇ ଦେବାକୁ ପଡ଼ିବ, ଆପଣଙ୍କ ବିପର୍ଯ୍ୟୟର ଠିକ୍ ହେତୁ କ'ଣ ? ମୁଁ ଶୀଘ୍ର କଣ୍ଠରେ କହିଲି । ଲେଖିବାର ଶକ୍ତି ଯେ ସବୁବେଳେ ଅକ୍ଷୁର୍ଣ୍ଣ ରହିବ, ଏହାର କୌଣସି ମାନେ ଅଛି ? ଓଲଟି ପ୍ରଶ୍ନ କଲେ ସେ ମୋତେ ।

ଅକ୍ଷୁର୍ଣ୍ଣ ରହିବ ଓ ତାର ଅଭିବୃଦ୍ଧି ଘଟିବ ଯଦି ଆପଣଙ୍କର ଚିନ୍ତା ଓ କର୍ମ ଗ୍ଳାନିଯୁକ୍ତ ନ ହୁଏ ମୁଁ ଦୃଢ଼ କଣ୍ଠରେ କହିଲି, କ୍ରମେ ଉର୍ଦ୍ଧ୍ୱକୁ ଉଠୁଛେ ଆମେ, ମାତ୍ର ଅର୍ଦ୍ଧ ପଥରେ ଯଦି ଅଟକି ଯାଉ ଅଥବା ଖସି ପଡ଼ିବାର ଆଶଙ୍କା ହଠାତ୍ ଯଦି ଦେଖାଦିଏ, ତେବେ ଆତ୍ମ ନିରୀକ୍ଷଣ ଦ୍ୱାରା ହିଁ ଉକ୍ତ ପ୍ରତିବନ୍ଧକ ଦୂର କରିହେବ । ନିଜର ଭ୍ରମ ପ୍ରତି ଆଖି ବୁଜି ଦେଲେ ଭୁଲ୍‌ର ଦୁଃଖଦ ପରିଣତିରୁ କଣ ମୁକ୍ତି ମିଳେ ?

କବି ଗଡ଼ନାୟକ କିପରି ଏକ ବ୍ୟଥିତ ଦୃଷ୍ଟିରେ ମୋତେ ଅନାଇଲେ ମୁହୂର୍ତ୍ତ କେତେକ ଓ ତାପରେ ହଠାତ୍ ବାଷ୍ପାକୁଳ କଣ୍ଠରେ କହି ଉଠିଲେ, ଆପଣ ତ ମୋର ନିଜର କେହି ନୁହନ୍ତି, ଅଥଚ ଅନ୍ଧାରରୁ ମୋତେ ଟାଣିଆଣିବାକୁ ଏତେ ବ୍ୟାକୁଳ ହୋଇଉଠିଛନ୍ତି କାହିଁକି ? ଆପଣ କ'ଣ ଭାବୁଛନ୍ତି ମୁଁ ମୋର ଏ ଜୟନ୍ତୀ ପାଳନର ପ୍ରହସନ ସମ୍ପର୍କରେ ସଚେତନ ନୁହେଁ ? ତଥାପି ପ୍ରଲୋଭନରୁ ତ ନିଜକୁ ରକ୍ଷା କରିପାରୁନି । ଏତେ ଆୟୋଜନ କରି ଆନନ୍ଦ ଟିକିଏ ପାଇବାକୁ କେତେ ଚେଷ୍ଟା ନ କରୁଛି । ମାତ୍ର ଆନନ୍ଦ ପାଇ ପାରୁଛି କେଉଁଠି ? ନିଜ ସ୍ତୁତି ଅନ୍ୟ ତୁଣ୍ଡରେ ଶୁଣିବାବେଳେ ମନେହୁଏ ସେ କ'ଣ ସତରେ ମୋର 'ଗୁଣଗାନ

କରୁଛନ୍ତି, ନା, ପରୋକ୍ଷ ବରାଦ ଅନୁଯାୟୀ ଅଭିନୟ କରିଯାଉଛନ୍ତି କେବଳ । ଏହା ବୁଝିବା ସତ୍ତ୍ୱେ ବିଚିତ୍ର ଏ ମୋହରୁ ମୁକ୍ତି କାହିଁ ? ମଦ ପିଇ ପିଇ ଏପରି ଏକ ଅନିଚ୍ଛା ଆସି ପହଞ୍ଚେ, ଯେତେବେଳେ ମଦ – ଚା ନିଶା ଆଉ ଧରେନା । ଠିକ୍ ସେହିପରି ନିଜେ ନିଜର ଜୟନ୍ତୀ ପାଳନ କରି କରି ଜୟନ୍ତୀ ପାଳନର ଆନନ୍ଦ ଆଉ ଅନୁଭୂତ ହେଉନାହିଁ । ନିଶା ନ ଧରିଲେ ବି ମଦ୍ୟପ ଯେପରି ମଦ୍ୟପାନର ଅଭ୍ୟାସ ଛାଡ଼ିପାରେନା, ଆନନ୍ଦ ଆଉ ନ ମିଳୁଥିଲେ ମଧ୍ୟ ନିଜେ ନିଜର ଜୟନ୍ତୀ ପାଳନର ଅଭ୍ୟାସ ମୁଁ ତ୍ୟାଗ କରି ପାରୁନାହିଁ । ସତ କହୁଛି, ମୁଁ ବଡ଼ ନିଃସହାୟ ଓ ନିଃସ୍ୱ ହୋଇପଡ଼ିଛି । ନିଜର ଜୟନ୍ତୀ ପାଳନ କରି କରି ନିଜକୁ ଓ ଅନ୍ୟମାନଙ୍କୁ ଠକୁଛି କେବଳ, କିନ୍ତୁ ଅନ୍ଧ ଅହମିକା ଓ ଅସୂୟାରୁ ତ ଆତ୍ମରକ୍ଷା କରି ପାରୁନାହିଁ । ଫଳତଃ ଆନନ୍ଦରୁ ମୁଁ ଆଜି ବଞ୍ଚିତ । ଅଥଚ ସୃଷ୍ଟିର ଭିତ୍ତି ହିଁ ହେଲା ଆନନ୍ଦ । ଯେଉଁ ଆନନ୍ଦ ଠାରୁ ମୁଁ ଆଜି ଅନେକ ଦୂରରେ । ମୁଁ ଚମକି ପଡ଼ିଲି – କବି ଗଡ଼ନାୟକଙ୍କର ସ୍ୱରୂପ ତେବେ ମୋର ଉପସ୍ଥିତ ଚିନ୍ତାର ଅନୁରୂପ ନୁହେଁ, ସମ୍ପୂର୍ଣ୍ଣ ବିପରୀତ ? ସେ ସଚେତନ, ଅଥଚ ନିରୁପାୟ । ଜୟନ୍ତୀ ପାଳନର ଶୂନ୍ୟତା ଉପଲବ୍ଧି କରି ମଧ୍ୟ ନିଜେ ସେ ନିଜର ଜୟନ୍ତୀ ପାଳନ କରି ଚାଲିଛନ୍ତି । ଆହା, କେତେ ଦୁଃଖୀ ସେ ।

ତାଙ୍କର ଅଶ୍ରୁ ଛଳ ଛଳ ନୟନକୁ ଚାହିଁ ଦେଇ ଆଖି ମୋର ଅଶ୍ରୁସଜଳ ହୋଇ ଉଠିଥିଲା, ମୁଁ ନିଜର ଭାବାବେଗକୁ ସମ୍ବରଣ କରିନପାରି କହି ପକାଇଲି, ଶୂନ୍ୟ ଜୟନ୍ତୀ ପାଳନର ଆଉ ଆବଶ୍ୟକତା କ'ଣ ? ଅସୂୟାଶୂନ୍ୟ ନିରହଙ୍କାର ଆନନ୍ଦ ନେଇ ନିଜର ପୂର୍ବ ସୃଷ୍ଟି ସମୂହ ମଧ୍ୟରେ ଆପଣ ବୁଡ଼ିଯାନ୍ତୁ । ଆପଣ ଆଜି ଜଣେ ପାଠକ ଭାବେ ଅତୀତର କବି ଗଡ଼ନାୟକଙ୍କୁ ହୃଦୟରେ ଧାରଣ କରନ୍ତୁ, ଦେଖିବେ ପୁନର୍ଜନ୍ମ ହେବ ଆପଣଙ୍କର । କିଛି ହଜିଯାଇ ନାହିଁ, କିଛି ଲିଭିଯାଇ ନାହିଁ, ଆବରଣର ଅନ୍ତରାଳରେ ଛପିଯାଇଛି କେବଳ । ମେଘ ଅପସରି ଗଲେ ସୂର୍ଯ୍ୟ ପୁନର୍ବାର ଜଳି ଉଠିବ । ଜଳି ଉଠିବ ଅଧିକ ଭାସ୍ୱର ହୋଇ । ବିଦାୟ ନେଇ ମୁଁ ଆସିବାବେଳେ କବି ଗଡ଼ନାୟକ ମୋର ପ୍ରକୃତ ନାମ ଓ ପରିଚୟ ଜାଣିନେବା ପରେ ଦୁଇହାତ ମୋର ଆବେଗରେ ଧରି ପକାଇ ବାଷ୍ପ ଗଦ୍‌ଗଦ୍ କଣ୍ଠରେ କହିଉଠିଲେ, ଜଣେ ଗାଳ୍ପିକର ଜଣେ କବି ପ୍ରତି ଏତେ ପୁଣି ଦରଦ ।



# ମେଘ ମୋହ

## ଦେବ ପ୍ରସାଦ ଦାଶ



ବାପା ଆସୁଛନ୍ତି.... ମେଘ ଆସୁଛି ।

ଉନ୍ମୁକ୍ତ ହେଉଥିଲା ପୂଜା । ସତେ ଯେମିତି ଓହ୍ଲାଇ ଯାଉଥିଲା ଏକ ବିରାଟ ବୋଝ ।

ଧୀରେ ଧୀରେ ପୋଷାକ ଖୋଲୁଥିଲା ସେ ଶରୀରରୁ । ଶାଢ଼ୀ, ସାୟା, ବ୍ଲାଉଜ୍, ବ୍ରେସିୟର, ଅନ୍ତର୍ବସ୍ତ୍ର । ପୋଷାକ ଓହ୍ଲାଇ ନଗ୍ନ ହୋଇଯିବା ସତେ ଯେପରି ଏକ ନୈପୁଣ୍ୟଭରା କଳା । ସେ କଳାର ପୁଣି ଏକ ଧାରା ଅଛି । ଶାଢ଼ୀ ପ୍ରଥମେ ଖସିଯିବ ଛାତି ଉପରୁ । ଅଣ୍ଟାରୁ ଖୋସଣୀ ଫିଟିଯିବ । ପୂଜାର ସରୁ ଓ ଲମ୍ବା ଆଙ୍ଗୁଠି ଗୁଡ଼ିକ ବ୍ଲାଉଜ୍‌ର ବଟନ ଖୋଲି ଖୋଲି ଦେବେ କେଉଁ ଏକ ଦେବୀ ମୂର୍ତ୍ତିର ପାଦତଳେ ଗୋଟି ଗୋଟି କରି ଫୁଲ ସମର୍ପିତ ହେବାପରି । ସାୟାର ଗଣ୍ଠି ଫିଟିବା କ୍ଷଣି ଆପେ ଆପେ ତଳକୁ ଖସିପଡିବ ସେଇଟି । ବ୍ରା'ର ହୁକ୍ ଖୋଲିଯିବ ଏକ ମଧୁର ସଙ୍ଗୀତର ସ୍ୱରପରି । ଅତି ସହଜ ଭାବରେ ଉତାରି ଦେବ ସେ ନିମ୍ନାଂଶର ଅନ୍ତର୍ବସ୍ତ୍ରକୁ । ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ଠିଆ ହୋଇଥିବ ନିର୍ବିକାର ଭାବରେ । ମନେହେଉଥିବ କେଉଁ ନିଘଞ୍ଚ ଜଙ୍ଗଲ ଭିତରୁ ସଦ୍ୟ ଆବିଷ୍କୃତ ଦେବାଳୟ ଭଳି ଅଥବା କେଉଁ ଏକ ରତ୍ନଗର୍ଭା ମାଟିତଳୁ ମିଳିଥିବା ସୁନାଖଣି ଭଳି ।

ଦର୍ଶକ ଆଖିରେ ଯାଏ ପ୍ରତ୍ନତାତ୍ତ୍ୱିକ କୌତୂହଳ । ଆଖିରେ ବିଦ୍ୟାପତିର ସନ୍ଧାନୀ ଦୃଷ୍ଟି ।

ପୂଜା ଠିଆ ହୋଇଥିଲା ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ।

ବାପା ଆସୁଛନ୍ତି ...... ।

ଦର ଛିଡ଼ିଥିଲା କିଛି ଅଧିକ ମିଳିବ । ସର୍ତ୍ତ ଥିଲା ସେ ପ୍ରତିବାଦ କରିବ ନାହିଁ । ଗ୍ରାହକ ଈଶ୍ୱର । ତୃପ୍ତିରେ ସେ ଅବଗାହନ କରିବ, ସନ୍ତରଣ କରିବ, ଦେହ ହାଲକା କରିବ ଓ ପବନ ପହଁରିବ । ପୂଜା ନଦୀରୁ ସମୁଦ୍ର ପାଲଟିବ । ବିଦ୍ୟାପତି ନୀଳ କନ୍ଦରରୁ ଜ୍ୟୋତି ଅପହରଣ କରିବ । ସମୁଦ୍ର ସ୍ନାନ ପରେ ମୁକ୍ତାତ ନୁହେଁ, କିଛି ଶାମୁକା ଗୋଟାଇବ ପୂଜା ।

ଏମିତି ତ ଚାଲିଛି କାହିଁ କେତେ କାଳ ଧରି । ସମୟର ବା କି ହିସାବ ଅଛି ? ବର୍ଷ, ମାସ, ଦିନ, ଦଣ୍ଡ । ଏସବୁ ପଛରେ । ମୁହୂର୍ତ୍ତ ଗଣିବା ଛାଡ଼ି ଦେଇଛି ସେ କାହିଁ କେବେଠାରୁ ।

ପୂଜା ଯାଉଥିଲା ଖଟ ପାଖକୁ । ସୋରିଷ ମଞ୍ଜି ବୁଣି ବୁଣି । ନୀଳ କନ୍ଦରର ବାଟ ଦେଖାଇବ ସେ ନିଜେ । କାହାରିକୁ ପରିଶ୍ରମ କରିବାକୁ ପଡ଼ିବ ନାହିଁ । ଶୋଇଗଲା ସେ ଶଯ୍ୟା ଉପରେ, ସତେ ଯେପରି କଦଳୀ ପତ୍ର ଉପରେ ଘିଅ ଗୋଳାଇ ଭାତ ବାଢ଼ି ଦେଉଥିଲା କେହି ।

ବାପା ଆସୁଛନ୍ତି ଯେ.... ।

ଭୋକରେ ଆଉଟୁ ପାଉଟୁ ବିଦ୍ୟାପତି । ଖାଦ୍ୟ ତା ସମ୍ମୁଖରେ । ଅନ୍ନ, ବ୍ୟଞ୍ଜନ, ମିଷ୍ଟାନ୍ନ, ସୋମରସ । ନିଚୋଡି ନେଲା ସେ । ପୋଛି ପୋଛି ଖାଇଲା । ଖାଇବା ପରେ ହାତ ଚାଟିଲା । କଦଳୀ ପତ୍ରରୁ ମହ ମହ ଘିଅର ବାସ୍ନା । ଇଛା ହେଉଛି ପତ୍ରକୁ ମଧ ଖାଇଦିଅନ୍ତା ସେ । ପତ୍ରର ଶିରାରେ ଗାର କାଟିଲା ବିଚକ୍ଷଣ ଜାନ୍ତବ ନିର୍ଦ୍ଦିଷ୍ଟତାକୁ ନେଇ । କ୍ଷୁଧାତୃପ୍ତି ପାଇଁ ମାର୍ଗ ଯେ ଭିନ୍ନ ଭିନ୍ନ ।

ପୂଜା ଦିଶୁଥିଲା ବତାସ ମାଡ଼ରେ ବିଦୀର୍ଣ୍ଣ କଦଳୀ ପତ୍ର ପରି । ଧୀରେ ଧୀରେ ସେ ସଜାଡ଼ିଲା ନିଜକୁ । କଞ୍ଚାପତ୍ରରେ ଚରୁ ବାଢ଼ିବା ପାଇଁ ଗୋଟା କଦଳୀ ପତ୍ରର ଆବଶ୍ୟକତା ନଥାଏ।

ତରତର ହୋଇ ପୋଷାକ ପିନ୍ଧିଲା । ଚିହ୍ନରା ଗ୍ରାହକ । ମୂଲ୍ଲ ଅନୁଯାୟୀ ଦର ଦେଲା । ପୂଜାର ଆଖି ଛଳ ଛଳ ହୋଇ ଉଠିଲା ଆନନ୍ଦରେ । ବାପା ଆସୁଛନ୍ତି..... ।

ଯେଉଁଦିନ ଚିଠି ପହଞ୍ଚିଲା, ପୂଜାର ମନେ ହେଉଥିଲା ଖରାର ନିଆଁ ଧାସକୁ କାଟିବା ପାଇଁ ସତେ ଯେମିତି କେହି ଜଣେ ପହଞ୍ଚାଇ ଥିଲା ଅସରାଏ ମେଘର ଖବର । ମେଘ ଆସୁଛି । ସେମାନଙ୍କ ଜୀବନକୁ ଶୀତଳାଇ ଦେବାକୁ । ଖୁସୀରେ ନାଚି ଯାଇଥିଲେ ସମସ୍ତେ।

ଲିଭି ଲିଭି ଆସୁଥିଲା ବାପାଙ୍କ ଚେହେରା । କେଉଁ ଏକ ଅଚିହ୍ନା ମୁହୂର୍ତ୍ତରେ ଘରଛାଡ଼ି ଚାଲି ଯାଇଥିଲେ ସେ । କାହିଁକି କ'ଣପାଇଁ ? କି କାରଣ ଥିଲା ତାଙ୍କର ଏଭଳି ନିଷ୍ପତ୍ତି ପଛରେ ?

ବୋଉ କିଛି କହିପାରି ନଥିଲା । ଅନ୍ୟମାନେ ବୁଝିବା ଭଳି ଅବସ୍ଥାକୁ ଆସି ନଥିଲେ । ବାପା ଚାଲି ଯାଇଥିଲେ କାହାକୁ କିଛି ନକହି ।

ପୂଜା ବି ସେମିତି ଚାଲିଯାଇ ପାରିଥାନ୍ତା । ହେଲେ ଯାଇ ପାରିଲା କି ? କଲେଜରେ ପଢୁଥିଲା ସେ, ବାପା ହଠାତ୍ କାହାକୁ କିଛି ନକହି ଅନ୍ତର୍ଦ୍ଧାନ ହୋଇଯିବା ବେଳକୁ ଶରୀରରେ ତା'ର ବସନ୍ତର ଅନୁରାଗ । ଭର୍ତ୍ତି ହୋଇ ଆସୁଥିଲା ସବୁଜ ପତ୍ରମାନଙ୍କ ମେଳରେ କୃଷ୍ଣଚୂଡ଼ାର ରଙ୍ଗ । ମାଳି ଭଳି ଦିଶିଥିଲେ ବାପା । ସାହସ ଥିଲା, ବିଶ୍ୱାସ ଥିଲା ପୂଜାର ବାପା ଥାଉ ଥାଉ ସେ ରଙ୍ଗ କାଣିଚାଏ ବି ଅପସାରିତ ହେବ ନାହିଁ । ହାତ ଲଗାଇ ପାରିବେ ନାହିଁ କେହି ।

କିନ୍ତୁ ହଠାତ୍....ବାପା ନିଖୋଜ ହୋଇ ଯାଇଥିଲେ ସେମାନଙ୍କ ଘର ଦୁଆର ବାହାରେ ଥିବା ଅଜଣା ଭିଡ଼ ଭିତରେ । କେତେ ଖୋଜିଥିଲେ ସେମାନେ । ବାପାଙ୍କର କୌଣସି ସନ୍ଧାନ ମିଳିନଥିଲା ।

ଖବର ଆସେ ସେମିତି ଚେହେରାର ଲୋକଟେ ବୁଲୁଛି ଅମୁକ ଯାଗାରେ, ସମୁକ ହାଟରେ, ତମୁକ ବଜାରରେ । ବାପା ମିଳନ୍ତି ନାହିଁ । ହଜିବା ଲୋକ କ'ଣ ପୁଣି ଫେରିଆସେ ? ବାପା ହଜିଥିଲେ ନା ନିଜକୁ ହଜାଇ ଦେଇଥିଲେ ?

ଅଧା ପାଠୁଆ ଝିଅ ପୂଜା ଉପରେ ଲଦିହେଇ ଯାଇଥିଲା ବୋଉ ଓ ଚାରି ଭାଇ ଭଉଣୀଙ୍କ ଦାୟିତ୍ୱ । ବାପା କ'ଣ କରୁଥିଲେ ଓ କେତେ ତାଙ୍କର ରୋଜଗାର ଥିଲା, କେବେ ଜାଣିବାର ଚେଷ୍ଟା କରିନଥିଲା ପୂଜା । କୋଉଠି କ'ଣ ସାଇତିଥିଲେ ଓ କେତେ ପୋତାଧନ ରଖି ଯାଇଥିଲେ, ଖୋଜିବାର ପ୍ରୟାସ କରି ନଥିଲା ପୂଜା । ଅଥଚ ଉତ୍ତରାଧିକାର ଭାବରେ ସେ ପାଇଥିଲା ବାପଅଜା ଅମଳର ଏକ ପୁରୁଣା, ସମୟ ସାଙ୍ଗରେ ଯୁଝୁଥିବା ଘର ଆଉ ଏକ ବିରାଟ ପରିବାର ।

ଚାହିଁଥିଲେ ଛାଡ଼ି ଚାଲି ଯାଇ ପାରିଥାନ୍ତା ସେ । ଆଉ ଜଣେ 'ବାପା' ହେବାକୁ ଚାହିଁ ନଥିଲା ସେ କିନ୍ତୁ । କାହାକୁ ଛାଡ଼ି ପାରିଥାନ୍ତା ସେ ? ବାପା ଯିବାପରେ ନୀରବ ହୋଇଯାଇଥିବା ବୋଉକୁ ନା ବାପାଙ୍କ ଯିବାପରର ବାସ୍ତବତାକୁ ସେ ପର୍ଯ୍ୟନ୍ତ ବୁଝିପାରିନଥିବା ନିଷ୍ପାପ ଛୋଟ ଭାଇଭଉଣୀମାନଙ୍କୁ ?

ଏଗୁଣ୍ଠି ଡ଼େଇଁ ବାହାରକୁ ଗଲା ପୂଜା । ଏ ପର୍ଯ୍ୟନ୍ତ ତା ପାଇଁ ଅଜଣା, ଅଚିହ୍ନା ଏକ ବିରାଟ ସଂସାରର ସାମ୍ନା କରିବାକୁ । ସେ ଭାବିଥିଲା ସୌହାର୍ଦ୍ଧ୍ୟବାନ ମାନଙ୍କ ପୃଥିବୀକୁ ଭେଟିବ । କିନ୍ତୁ ଏମିତି ହୋଇ ନଥିଲା ।

କିଛି ପାଠ ପଢ଼ିଛି, ଦେଖିବାକୁ ସୁନ୍ଦରୀ, କାମ ଚଳେଇ ନେଇପାରିବ । ଏସବୁ ଯୋଗ୍ୟତାର ଦର ଥିଲା ବଜାରରେ ଅଚଳ ପଇସା ପରି । ସବୁଠାରେ ସ୍ୱର୍ଣ ଆତୁରତା । ନାରୀ ତ ଚିରକାଳ ପଣ୍ୟ ସାମଗ୍ରୀ । ବଜାର ତା'ର ମୂଲଚାଲ କରେ, ଦର କଷେ, ତଉଲ ଓଜନ କରେ । ରାଜି ତ ଯୋଗ୍ୟତା ତିଆରି ହୋଇଯାଏ । ନହେଲେ ଓପାସ ପେଟ, ଉଦାସ ଆଖି ଓ ଦୀର୍ଘଶ୍ୱାସ ମାଡ଼ି ମାଡ଼ି ପଡ଼େ ।

ପଛପଟେ ବିରାଟ ଏକ ଦାୟିତ୍ୱର ବୋଝ, ସମ୍ମୁଖରେ କଠୋର ବାସ୍ତବତା ସହିତ ଦୀର୍ଘକାଳ ଯୁଝିପାରି ନଥିଲା । ନିଜେ ବାପା, ପାଲଟିଯିବା ପୂର୍ବରୁ କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ବୁଝାମଣା କରିନେଲା ପରିସ୍ଥିତି ସହିତ । ନାରୀରୁ ସେ ନଦୀ ପାଲଟିଗଲା । ପଥର, ପାହାଡ, ଜଙ୍ଗଲ, ଜନପଦକୁ କାଟି ଚିରି ବହିଗଲା ବେଳକୁ ଆଗକୁ, ବହୁ ମଇଳା ଆବର୍ଜନାକୁ ଆଦରି ନେଲା ସେ ବୁକୁରେ ।

ଚାକିରି ପାଇଲା ବହୁ କଷ୍ଟରେ । ଧନାଢ଼୍ୟ ଶିଳ୍ପପତିର ବ୍ୟକ୍ତିଗତ ସହାୟକ । ପ୍ରତ୍ୟେକ କାମର ଏକ ନାମ ରହିବା ଆବଶ୍ୟକ । ନାଁ ତ ଏକ ପରଦା, ଉହାଡ଼ ଅନ୍ଧାରକୁ ଘୋଡ଼ାଇ ଦେବାର ଏକ ଢ଼ାଙ୍କୁଣୀ । ସେ ଅନ୍ଧାର ପ୍ରଥମେ ପ୍ରଥମେ ତାକୁ ଲାଗୁଥିଲା ଭୟଙ୍କର । କିଛି ଦିନ ପରେ ଅନ୍ଧାରକୁ ସେ ଆଉ ଡରିଲା ନାହିଁ ।

ବୋଉ ହସିଲା ଅନେକ ଦିନ ପରେ । କେହି ଭଲ ପିନ୍ଧିଲା, କେହି ପଢ଼ିବାକୁ ସ୍କୁଲକୁ ଗଲା, ଆଉ କେହି ଭଲ ଖାଇଲା । ପୂଜା ସେହି ବାପଛଡ଼ା ପରିବାରର ଆସ୍ଥା ପାଲଟିଗଲା । ଖୁସୀର ଯଜ୍ଞରେ ସେ ସନ୍ତୋଷର ସହିତ ଆହୁତି ଦେଲା । ନଦୀର ପୂର୍ଣ୍ଣଗର୍ଭା ଚେହେରାକୁ ସମସ୍ତେ ଦେଖିଲେ । ବନ୍ୟା ଆସି ସେ କୂଳ ଲଂଘିବା କେହି ଦେଖିଲେ ନାହିଁ । ବନ୍ୟାପରେ ନଦୀର ଶୋଷକୁ କେହି ଜାଣିଲେ ନାହିଁ ।

ସନ୍ତରଣକାରୀ ବଦଳୁଥିଲେ, ନଦୀ କିନ୍ତୁ ସେମିତି ଥିଲା । ନଦୀର ଗତିପଥ ବଦଳୁନଥିଲା । ନଇତ କିଛି ନିଏ ନାହିଁ । ସେତ ଦେଉଥାଏ ସବୁବେଳେ ।

ଅନେକ ଶଯ୍ୟା, ଅନେକ ଲୁଣ୍ଠନ, ଅନେକ ପୁରୁଷଙ୍କ ଆତ୍ମାତୃପ୍ତି । ରୋଜରୋଜ ସେହି ଦିନଲିପି । ଗୋଟିକ ପରେ ଗୋଟିଏ ପୋଷାକ ଓହ୍ଲାଇଯାଏ । ସମ୍ପୂର୍ଣ୍ଣ ଉଲଗ୍ନ ହୁଏ ପୂଜା । ଚିହ୍ନା ଅଚିହ୍ନା ପୁରୁଷଙ୍କୁ ନିମନ୍ତ୍ରଣ କରେ । ଦେହ କର୍ମଭୂମି ପାଲଟେ । କେହି ସ୍ୱାଦ ନିଏ, କେହି ଜିଭ ଲଗାଇ ଚାଟି ପକାଏ, କେହି ଖାଇଯାଏ, କେହି କ୍ଷତାକ୍ତ କରେ ଅବା ଆଉ କେହି ଖିନ୍‌ଭିନ୍ କରେ । ପୁଣି କେହି ହଳକରେ, କେହି ମଇ ଦିଏ, କେହି ବାଲୁଙ୍ଗା ବାଛେ ଅବା କେହି ଫସଲ କାଟେ ।

ସେ ଘରେ ତାକୁ ପ୍ରଶ୍ନ ପଚାରିବା ପାଇଁ କେହି ନଥିଲେ । କୃତଜ୍ଞ ଅଦା ବେପାରୀମାନେ ଜାହାଜର ମୂଲ କରିଥାନ୍ତେ ବା କିପରି ? କେଉଁ ଏକ ରାଜାପୁଅର ହୃଦୟର ନୀଳକନ୍ଦରର ଜ୍ୟୋତି ହେବା ଅପେକ୍ଷା

ତାଙ୍କର ବଡ଼ ଦେଉଳରେ ରହିବାକୁ ପୂଜା ତ ନିଜେ ନିଜେ ଆଦରି ନେଇଥିଲା । ଅନ୍ୟର ଖୁସୀ ପାଖରେ ତା ନିଜ ଇଚ୍ଛାର ସାମର୍ଥ୍ୟ ବା ପ୍ରତିଦ୍ୱନ୍ଦୀ ଥିଲା କେତେବେଳେ ?

ସବୁ ତ ସେମିତି ଚାଲିଥିଲା । ମେଘର ସନ୍ଦେଶ ଆସିବା ଯାଏଁ ।

ବାପା ଫେରୁଛନ୍ତି... ।

ଛୋଟ ପିଲା ହୋଇଗଲା ପୂଜା ପୁଣିଥରେ । ସେ ତ କେବଳ ଏତେଦିନ ଯାଏଁ ବାପାଙ୍କ ଦାୟିତ୍ୱକୁ ମୁଣ୍ଡାଇଥିଲା । ବାପା, ଯିଏ ତାକୁ ଘଡ଼ିଏ ନ ଦେଖିଲେ ଥୟ ଧରୁନଥିଲେ । ବାପା, ଯିଏ ତାକୁ ସାଙ୍ଗରେ ନେଇ କଲେଜ୍‌ରେ ଛାଡ଼ି ଦେଇ ଆସୁଥିଲେ । ବାପା, ଯିଏ ସମସ୍ତଙ୍କ ଠାରୁ ଲୁଚେଇ ପ୍ରଥମେ ତା' ପାଇଁ ଖାଇବାକୁ ବାଢ଼ି ଦେବାକୁ ବୋଉକୁ ତାଗିଦ୍ କରୁଥିଲେ । ପୂଜା ପାଇଁ କରୁଣାର ମୂର୍ତ୍ତିଟିଏ । ସେଥିପାଇଁ ତ ବାପା ତାଙ୍କୁ ଛାଡ଼ିଯିବାର କଠୋରତା ପାଖରେ ମଧ୍ୟ ତା ଭିତରେ ବାପାଙ୍କ ପ୍ରତି ସାମାନ୍ୟ ମାତ୍ର ଘୃଣା ନଥିଲା । ସତେ ଯେମିତି ବାପା ଚାଲିଯିବା ଏକ ସ୍ୱାଭାବିକତା ହିଁ ଥିଲା । ସାଙ୍ଗରେ ଚାଲୁଥିଲା ବିଶ୍ୱାସଟିଏ ଯେ ଦିନେ ନା ଦିନେ ସେ ଫେରି ଆସିବେ । ଶାନ୍ତ, ଶୀତଳ ହେଇଯିବ ତା' ଜୀବନର ରୁକ୍ଷମାଟି ।

ବାପା ନିଜେ ଇଚ୍ଛା କରି ଫେରୁଥିଲେ । ଆତ୍ମୀୟ ସ୍ୱଜନଙ୍କ ମୋହକୁ କ'ଣ ସହଜରେ ଏଡ଼ାଇ ହୁଏ ? ରକ୍ତର ଆକର୍ଷଣକୁ ଛି' କରି ଦୂରେଇ ହୁଏ ? ବାଟ ଭୁଲିବା ଯେମିତି ସ୍ୱାଭାବିକ କଥା, ବାଟ ଫେରି ପାଇବା ମଧ୍ୟ ସେମିତି ନିଧାର୍ଯ୍ୟ ସମ୍ଭାବନା ।

ବୋଉର ପାଦ ତଳେ ଲାଗୁନଥାଏ ।

ଭାଇ ଭଉଣୀମାନେ ରହି ରହି ଦାଣ୍ଡଦୁଆରକୁ ଦଉଡ଼ି ଯାଉଥାନ୍ତି । ଘରେ ତ ମହୋତ୍ସବ । ନିଜର ଲୋକଟିକୁ ଫେରି ପାଇବା ଠାରୁ ଅଧିକ ଖୁସୀ ଆଉ କିଛି ଥାଇପାରେ ?

ମେଘର ଏକ ଋତୁ ଥାଏ । ବାପା ଆସିବା ପାଇଁ ସମୟ ସ୍ଥିର କରିଥିଲେ । ଅଥଚ ପରିବାରର ସମସ୍ତେ ଅସ୍ଥିର ଥିଲେ । ପୃଥିବୀରେ କ'ଣ ସମୟ ପୂର୍ବରୁ କେବେ କିଛି ଘଟେ ନାହିଁ ? ବାପା ହୁଏତ ପୂର୍ବରୁ ଆସି ପହଞ୍ଚି ଯାଇପାରନ୍ତି । ସମସ୍ତଙ୍କୁ ଚମକେଇ ଦେଇ କହି ପାରନ୍ତି । "ଦେଖିଲ ମୋ ଯିବା ଭଳି ମୋ ଆସିବା ମଧ୍ୟ କେତେ ଅଚାନକ" । ଏମିତି ହେବା ତ ଅସମ୍ଭବ ନୁହେଁ ।

ପୂଜାର ବ୍ୟସ୍ତତା ବଢ଼ି ଯାଇଥିଲା । ବାପା ଆସୁ ଆସୁତ ତାଙ୍କ ମୁଣ୍ଡ ଉପରେ ସେ ସଂସାର ଯାକର ଦାୟିତ୍ୱ ଥୋଇ ଦେବନାହିଁ । ସେ କ'ଣ ଭାବିବେ ? ବାପା ଆସିଲା ପରେ ତାକୁ ତ ଆଉ ଘରୁ ବାହାରିବାକୁ ଦେବେ ନାହିଁ । ନିଜେ ପୁଣି ସବୁକଥା ବୁଝିବାକୁ ଆରମ୍ଭ କରିବା ପର୍ଯ୍ୟନ୍ତ ଘରତ ଚଳେଇବାକୁ ହେବ ।

ଏବେ ତାକୁ ଅଧିକ ପରିଶ୍ରମ ପଡୁଛି । ଅଧିକ ଗ୍ରାହକଙ୍କୁ ସନ୍ତୁଷ୍ଟ କରିବାକୁ ହେଉଛି । ଯେଉଁମାନଙ୍କ ବଦ୍‌ପ୍ରକୃତି ପାଇଁ ନିଜଠାରୁ ସେମାନଙ୍କୁ ଦୂରେଇ ରଖେ, ଅଧିକ ଉପାର୍ଜନ ପାଇଁ ସେମାନଙ୍କ ସହିତ ମଧ୍ୟ ସେ ଯାଉଛି ବିନା ପ୍ରତିବାଦରେ । ମନକୁ ବୁଝେଇ ଦେଉଛି- ଆଉ ବା କେତେଦିନ ? ବାପା ଆସିବା ଯାଏଁ ତ !

ହୋଟେଲ୍ ରୁମ୍‌ର ଦର୍ପଣରେ ମୁହଁ ସଜାଡ଼ିଲା ସେ । ବ୍ଲାଉଜ୍‌ର ଦୁଇଟା ବଟନ୍ ଖୋଲା ରହିଯାଇଥିଲା ତା ଅଜାଣତରେ । ଆଉ ଥରେ ପରଖି ନେଲା ପୋଷାକକୁ । ନା, କୋଉଠି କିଛି ଅସଜଡ଼ା ନାହିଁ ।

"ପୁଣି କେବେ ଦେଖା ହେବ"- ଗରାଖ ପଚାରିଲା ।

"ହୁଏତ କେବେ ନୁହେଁ" – ପୂଜା ତାକୁ ନଚାହିଁ ବାହାରି ଯାଉ ଯାଉ କହିଲା ।

ବାଟରୁ କିଛି ଫଳ କିଣିଲା ସେ । କିଏ କହିବ ଯଦି ବାପା ଆଜି ଆସିଥାନ୍ତି ? ଏଗାର ବର୍ଷ ପରେ ଫେରୁଛନ୍ତି ସେ । ଆଉ ବର୍ଷେ ଡେରି ହୋଇଥିଲେ ବୋଉ ବିଧବା ହୋଇଥାନ୍ତା । ତାଙ୍କ ଆସିବା ଖବର ପାଇ ସେ ତ ଆହୁରି ବଡ଼ ସିନ୍ଦୂର ଟୋପା ଲଗାଉଛି । ନୂଆ ବାହା ହେଇଥିବା ଝିଅଟିଏ ପରି ଚଳଚଞ୍ଚଳ ହୋଇ ଉଠିଛି । ମୁହଁରୁ ଲାଜ ଲାଜ ଭାବଟିକୁ ପଢ଼ିବାରେ ଅସୁବିଧା ହେଉନି । ପୂଜା ତ ଚିରକାଳ ଏହି ନାରୀଟିକୁ ବୁଝିପାରି ନାହିଁ । ସ୍ୱାମୀ, ସନ୍ତାନ କାହାରି ଗାଳି, ତିରସ୍କାର, ଖାପଛଡ଼ା କଥାକୁ ଦିନେ ତ ଦିହକୁ ନେଇନି କି ମାନ ଅଭିମାନ କରିନି । ବିଚିତ୍ର ଉପାଦାନରେ ଗଢ଼ା ସତେ ଯେପରି ।

ଯାହା ହେଉ ବାପା ଆସୁଛନ୍ତି; ଅନ୍ତତଃ 'ବୋଉ' ନାମକ ସ୍ତ୍ରୀଟି ନ କହିଲେ ମଧ୍ୟ ଗଣ୍ଠିଧନ ପାଇବ ।

ପୂଜା ଘରକୁ ଫେରିଲା ।

ଦାଣ୍ଡ କବାଟ ମେଲା । ଘର ଭିତରୁ କିଛି ହୋ ହଲ୍ଲାର ଶବ୍ଦ ।

ସେ ମୁହୂର୍ତ୍ତେ ଠିଆ ହୋଇଗଲା ।

ପ୍ରତିକ୍ଷିତ ସମୟ କ'ଣ ଉପସ୍ଥିତ ?

ବାପା କ'ଣ ପହଞ୍ଚି ଗଲେଣି ?

ସେ ତ ପ୍ରତିଦିନ ବାହାରୁ ଘରକୁ ଫେରେ । ଆଜି କିନ୍ତୁ ରହି ରହି ଯାଉଛି ପାଦ । ଧକ୍‌ଧକ୍ ହେଉଛି ଛାତି । ସତେ ଯେମିତି କୌଣସି ଏକ ନୂଆ ଜାଗାକୁ ପ୍ରଥମଥର ପାଇଁ ସେ ଆସୁଛି ।

ଆଉଜା କବାଟ ମେଲାଇ ଭିତରକୁ ପଶିଲା ସେ ।

"ହେଇ ତ ପୂଜା ଆସିଲାଣି ।" ବୋଉ ପାଟି କରି କହିଲା । ସାମ୍ନାରେ ଏକ ଚଉକି ଉପରେ ଗେରୁଆ ଲୁଗା ପିନ୍ଧିଥିବା ମୁଣ୍ଡରେ ବେକାଏ ବାଳ ଓ ମୁହଁରେ ମେଞ୍ଚାଏ ଦାଢ଼ି ରଖିଥିବା ଜଣେ ବିଚିତ୍ରବେଶୀ ପୁରୁଷ । ପୂଜା ଚମକି ପଡ଼ିଲା । ଇଏ କ'ଣ ବାପା ?

ସେ ଧୀରେ ଧୀରେ ନିକଟକୁ ଗଲା । ଚିହ୍ନିବାର ଚେଷ୍ଟା କଲା । ବୋଉ କହିଲା – "ଆଲୋ ଚାହିଁଛୁ କ'ଣ, ମୁଣ୍ଡିଆ ମାର୍ ।"

ପୂଜା ନଇଁ ପଡିଲା ପାଦଧୂଳି ଆଣିବା ପାଇଁ । ଆଖିରେ ତା'ର ଲୁହର ଧାର । ଗେରୁଆ ବସ୍ତ୍ରଧାରୀ ଧୀରେ ପାଦକୁ ଘୁଞ୍ଚାଇ ନେଲେ ଓ ହାତକୁ ଉପରକୁ ଟେକି ଦୃଢ଼ ଅଥଚ ନମ୍ର ଭାବରେ କହିଲେ – "ହେଲା ମା, ମୋ ପାଇଁ ନାରୀ ସ୍ପର୍ଶ ଅଲୋଡ଼ା । ମୁଁ ଗୃହତ୍ୟାଗୀ, ସନ୍ନ୍ୟାସୀ । ମୋହ ମାୟା ବନ୍ଧନରୁ ମୁକ୍ତ । ତେବେ ସମ୍ପର୍କର ମୋହରୁ ସମ୍ପୂର୍ଣ୍ଣ ମୁକ୍ତି ପାଇବା ପାଇଁ ଶେଷଥର ପାଇଁ ମତେ ତମମାନଙ୍କ ପାଖକୁ ଆସିବାର ଥିଲା । କିଛି ଦିନ ଏଠି ବିତାଇ ମୁଁ ଚାଲିଯିବି ବନ୍ଧନ ମୁକ୍ତ ହୋଇ..." ।

ପୂଜା ମୁଣ୍ଡ ଉପରେ ଛିଡ଼ି ପଡୁଥିଲା କଳାହାଣ୍ଡିଆ ମେଘ । ନଦୀ ବକ୍ଷ ଫୁଲି ଉଠୁଥିଲା ବନ୍ୟା ଜଳରେ ଠିକ୍ ଏତିକିବେଳେ ନଈବନ୍ଧ ଭାଙ୍ଗି ଯାଇଥିଲା ଅଦୂରର ଜନପଦକୁ ଗର୍ଭସ୍ଥ କରି ।

ଇଏ କ'ଣ ତା ବାପା ସିଏ ଯିଏ ତା'ର ସାମାନ୍ୟ ଦେହ ଖରାପ ହେଲେ ରାତି ରାତି ତାକୁ ଜଗି ବସୁଥିଲେ ସେ ଭଲ ନ ହେବା ପର୍ଯ୍ୟନ୍ତ । ଡରିଗଲେ ଯିଏ ତାକୁ କୋଳରେ ଚାପି ଧରୁଥିଲେ କକମିନାର

ଭୟ ନଯିବା ପର୍ଯ୍ୟନ୍ତ ।

ଏଇ ତ ଗୃହତ୍ୟାଗୀ, ସ୍ୱାର୍ଥପର, ଛଦ୍ମବେଶୀ, ବ୍ୟକ୍ତି କେହି ନିଜ ଦାୟିତ୍ୱକୁ ମୁହଁ ମୋଡ଼ି ନିଜର ଅଲିଅଳି ଝିଅ ଉପରେ ସଂସାରର ବୋଝକୁ ଲଦି ଦେଇଥିବା ହୀନବୁଦ୍ଧି ପାପାଚାରୀ । ଭାଙ୍ଗି ପଡ଼ୁଥିଲା ପୂଜାର ଆସ୍ଥା ଓ ବିଶ୍ୱାସ । ସେ କେବଳ ଏକ ମଇଳା ନଦୀ ଯିଏ ଆବର୍ଜନାକୁ ବୋହିନିଏ । ସେ କେବଳ ଏକ ବିଦୀର୍ଣ୍ଣ କଦଳୀପତ୍ର ଯାହାର କ୍ଷୁଦ୍ରଅଂଶ ଉପରେ ଶ୍ରାଦ୍ଧର ଚଣ୍ଡ ବାଢ଼ି ଦିଆଯାଏ ।

କ୍ରମଶଃ ଉତ୍ତେଜିତ ହେଇ ପଡ଼ୁଥିଲା ପୂଜା । ଏଭଳି ଜଣେ ସଂସାରତ୍ୟାଗୀ ବ୍ୟକ୍ତିକୁ ଅଳ୍ପ କିଛି ଦିନ ପାଇଁ ହେଉପଛେ ଘରେ ରଖି ସହ୍ୟ କରି ପାରିବ ନାହିଁ ସେ । ଯେଉଁ ଘର ପାଇଁ ସେ ପ୍ରତିଦିନ ମରି ମରି ଜୀଉଁଛି, ସେଠି ଜଣେ ସନ୍ନ୍ୟାସୀର ସ୍ଥାନ ନାହିଁ ।

"ଆପଣ ଆସି ପାରନ୍ତି । ମୋହମାୟା ସମ୍ପର୍କର ଏ ଘରେ ଜଣେ ମହାତ୍ମାର କୌଣସି ଆବଶ୍ୟକତା ନାହିଁ ।" ପୂଜା ଚିତ୍କାର କରି ଉଠିଲା ।

ଦେଖଣାହାରୀମାନେ କିଛି ବୁଝି ପାରିବା ପୂର୍ବରୁ ଗୈରିକ ବସନ ଧାରୀ ସାଧୁ ନିଷ୍କ୍ରାନ୍ତ ହୋଇ ଯାଇଥିଲେ ଦାଣ୍ଡ ଦରଜା ଦେଇ ।

ବୋଉ ଚିତ୍କାର କରୁଥିଲା ।

ଭାଇଭଉଣୀମାନେ ବିସ୍ମୟାଭିଭୂତ ହୋଇ ଠିଆହୋଇ ରହିଥିଲେ । ପୂଜା ବୁଝିପାରୁଥିଲା ନୀଳକନ୍ଦର କେବେ ଆଉ ବଡ଼ ଦେଉଳରେ ରୂପାନ୍ତରିତ ହେବ ନାହିଁ ।

ସେ ପୁଣି ନିଜକୁ ପ୍ରସ୍ତୁତ କରିନେଲା ଗ୍ରାହକର ସନ୍ଧାନରେ ।



# ଅଚିହ୍ନା ମୁହଁ

## କ୍ଷୀରୋଦ ଦାସ



ଦୁଇଟି ଗୋଲ୍ଡଫ୍ଲେକ୍ ସିଗାରେଟ୍, ଚାରିଖଣ୍ଡ ତିଲକ୍ସ ମିଠାପାନ, ଜଲ୍ଦି ।' ଦୋକାନୀକୁ ବରାଦ ଦେଇ ଅନେକଦିନ ହେବ ଦେଖାହୋଇ ନଥିବା ଏବଂ ଛତ୍ରପୁର ବଜାରରେ ଅକସ୍ମାତ ଦେଖା ହୋଇଯାଇଥିବା ସ୍କୁଲ୍‌ବେଳର ସାଙ୍ଗ ସୁଧାକର ସହିତ ବିହ୍ୱଳିତ ଆନନ୍ଦରେ କଥାବାର୍ତ୍ତା ହେଉଥିଲି ମୁଁ ।

ତେଇଶ୍ ବର୍ଷ । ଜଣେ ମଣିଷର ପରମାୟୁ ଭିତରେ ତେଇଶବର୍ଷ କଣ କମ୍ ସମୟ ! ସୁଧାକର ସହିତ ମୋର ଘନିଷ୍ଠତା, ସେତେବେଳେ ସ୍କୁଲ୍‌ରେ ଗୋଟେ ଆଲୋଚନାର ବିଷୟ ହୋଇଯାଇଥିଲା । ଛାତ୍ରଛାତ୍ରୀମାନଙ୍କ ଠାରୁ ଆରମ୍ଭ କରି ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତେ ଜାଣିଥିଲେ ଆମ ସମ୍ପର୍କର ଗଭୀରତା ସମ୍ପର୍କରେ । ସେଇ ସୁଧାକର, ଉଣେଇଶି ଶହ ଏକାଅଶୀ ମସିହାରେ ଥରେ ଦିଥର ଦେଖାହୋଇଥିଲା କ୍ୟାପିଟାଲ୍‌ରେ । ଆଜି ଏତେବର୍ଷପରେ, ଅକସ୍ମାତ୍, ଛତ୍ରପୁର ବଜାରରେ ଗୋଟେ ମେଘଘୋଡ଼ା ମଧ୍ୟାହ୍ନରେ ।

'ଶଳା, ତୁ ପେଟୁଆ ହୋଇଗଲୁଣି ବେ !' -ଚିରାଚରିତ ଢଙ୍ଗରେ ସୁଧାକର ଆରମ୍ଭ କଲା । ତା କଥା କହିବାର ଶୈଳୀ ଆଦୌ ବଦଳିନଥିଲା- 'ଶଳା, ରାଜଧାନୀରେ ରହୁଛୁ । ଖାଇପିଇ ଖାଲି ବସୁଛୁ । ତୋର ଚିନ୍ତା କ'ଣ ?"

'ତୁ ବି କୋଉ କମ୍ ! – ମୁଁ କହିଲି – 'ସ୍କୁଲ୍‌ରେ ପଢୁଥିବାବେଳେ ଦେହରେ ପଳେ ବୋଲି ମାଂସ ନଥିଲା, ଏବେ ଦେଖୁନୁ । ଶଃ, ଚାକିରୀ କରିବ ତ ତହସିଲ କିମ୍ବା ବ୍ଲକ୍ ଅଫିସ୍‌ରେ ! ଡେଲି ଦେଖୁଥିବ କଞ୍ଚା ପଇସା ।

'ତୋର କେଇଟା ଛୁଆ ବେ ?' – ସୁଧାକର ପଚାରିଲା

'ଦି'ଟା- ମୁଁ ଉତ୍ତର ଦେଲି ଏବଂ ପଚାରିଲି – 'ତୋର ?'

'ଅଧା ଡଜନ୍‌ରୁ ମାତ୍ର ଦୁଇଟା କମ୍ ।' – ସୁଧାକର କହିଲା ଏବଂ ଠୋ ଠୋ ହସିଲା । ମୁଁ ବି ।

ଦୋକାନୀ ଠାରୁ ସିଗାରେଟ୍, ଦିଆସିଲି ଏବଂ ପାନ ଆଣୁଥିବାବେଳେ ସୁଧାକର ଟିକେ ଦୂରକୁ ଚାଲିଯାଇ ମତେ ହାତ ଠାରିଲା । ମୁଁ କିଛି ବୁଝି ନପାରି ସିଗାରେଟ୍‌ରେ ନିଆଁ ଧରାଇଲି, ଦୋକାନୀକୁ ଦିଆସିଲି ଫେରାଇଲି ଏବଂ ପଇସା ଦେଇସାରି ଆସିଲି ସୁଧାକର ପାଖକୁ ।

ଆବେ, ଟିକେ ଯାଡ଼କୁ ଆ ବେ ! ସେଇଟା ପରା କରୁଣାସାରଙ୍କ ଦୋକାନ ! ବୁଢ଼ା ବସିଛି ଦୋକାନରେ !– ସୁଧାକର ନିମ୍ନ କଣ୍ଠରେ କହିଲା ।

କାହା ଦୋକାନ ? କିଛି ବୁଝି ନପାରି ମୁଁ ପଚାରିଲି ।

'କରୁଣା ସାରଙ୍କ ଦୋକାନ !' ସୁଧାକର ଦୋହରାଇଲା ତା କଥା ।

ମୁଁ ଫେରି ଚାହିଁଲି ପଛକୁ । ଛୋଟିଆ କେବିନ୍ ଭିତରେ ବସିଥିବା ବୁଢ଼ାଲୋକଟିକୁ । ମୁହଁସାରା ଧଳା ଦାଢ଼ି । ମୁଣ୍ଡବାଳ ପାଚି ଧୋବ ଫରଫର । ଜୀର୍ଣ୍ଣଶୀର୍ଣ୍ଣ ଚେହେରାଧାରୀ ଏ ମଣିଷଟା କାଳେ କରୁଣାସାର୍ ।

ହଁ, ସେ କରୁଣାସାର୍ । ଦିବର୍ଷ ହେଲା ଦୋକାନ କରିଛନ୍ତି ଏଇଠି ।' -ସୁଧାକର ମୋ ସଂଦେହକୁ ସତ୍ୟରେ ରୂପାନ୍ତରିତ କରିବା ପାଇଁ ଜୋର୍‌ଦେଇ କହିଲା ।

କରୁଣା ସାର୍ ! - ମୋ ଦେହ ଭିତରେ କିଛି ଗୋଟାଏ ବିଦ୍ୟୁତ୍ ପରି ଖେଳିଗଲା । ଇଏ କଣ ସେଇ କରୁଣା ସାର୍ !!

"ଆମ୍ବ ଗଛରେ ପାଣି ଦଉ ଦଉ ଶିମ୍ବଗଛଟା ମଲା

ଦଉଡି ଆସରେ ଇସ୍କୁଲିଆ ପିଲା କରୁଣା ମାଷ୍ଟର ମଲା ।"

ଗଣେଷ ପୂଜା ପରଦିନ ସାରା ସ୍କୁଲ୍‌ରେ ଚର୍ଚ୍ଚା ହେଉଥିଲା ଏକଥା । କାନ୍ଥ, ବ୍ଲାକବୋର୍ଡ, ନୋଟିସ୍‌ବୋର୍ଡ ଚାରିଆଡେ ଲେଖାହୋଇଯାଇଥିଲା ଏ ଦୁଇପଦ ଗୀତ ।

'ଏଇଟା ଏକାଦଶ ଶ୍ରେଣୀ ପିଲାଙ୍କ କାମ । ସାନ ଶ୍ରେଣୀର ପିଲାମାନେ ଏପରି କାମ କରିବାକୁ କେବେ ସାହସ କରିପାରିବେନି ।"- ସ୍କୁଲ୍ ଶିକ୍ଷକମାନେ ଏ ବିଷୟରେ ଘମାଘୋଟ ଆଲୋଚନା କରୁଥିବା ସମୟରେ ଦେବସାର୍ କହିଲେ । ହେଡ୍‌ମାଷ୍ଟ୍ରେ ତପନ୍‌ସାର ଜଣାପଡୁଥାନ୍ତି ଖୁବ୍ ଉଦ୍‌ବିଗ୍ନ । ଶବ୍ଦ ରୂପ ଧାତୁରୂପ ଉଚ୍ଚାରଣରେ କେଉଁଠି ସାମାନ୍ୟ ଭୁଲ୍ ରହିଲେ ଦୁଇ ଦୁଇଟା କାଉଁଳି ବେତ ପିଠିରେ ଉଡେଇ ଦେଉଥିବା ସଂସ୍କୃତ ପଣ୍ଡିତ ନଟସାର୍‌ଙ୍କ ଉପରେ ଦାୟିତ୍ୱ ଦିଆଯାଇଥିଲା ଏ ଘଟଣା ସମ୍ପର୍କରେ ସତ୍ୟାସତ୍ୟ ଜାଣିବାକୁ ।

'କିଏ ଏ କୋବି ?' - ଖୁବ୍ ଗମ୍ଭୀର କଣ୍ଠରେ, କ୍ଲାସ୍‌କୁ ପଶୁ ପଶୁ ପଚାରିଲେ ନଟସାର୍-" ମାନିଯାଅ । ମାନିଗଲେ ଛାଡ଼ି ଦେବି ।"

ନଟସାର୍‌ଙ୍କୁ ରାଗିବାର ଆମେ ଅନେକଥର ଦେଖିଛୁ । ହେଲେ ସେଦିନ ତାଙ୍କର ସେଇ ଚେହେରା ଆମ କଲିଜାକୁ ହେମାଳ କରିଦେଲା । ଆମ ଶ୍ରେଣୀରେ ଥିଲେ ମାତ୍ର ଚାରିଜଣ ଝିଅ । ସେମାନେ ସେତେବେଳକୁ କାନ୍ଦି ପକେଇଲେଣି ।

'ଆଜି ଦିନକ ସମୟ ଦେଲି ।' ନଟସାର୍ ସେହିପରି ଗମ୍ଭୀର ସ୍ୱରରେ କହିଲେ - "କାଲି ପ୍ରଥମ ପିରିୟଡ ଠାରୁ ଶେଷ ପିରିୟଡ୍ ପର୍ଯ୍ୟନ୍ତ ମୋର । ମୋ ରାଗତ ତମେମାନେ ଦେଖିଛ । ମତେ ବେଶୀ ଉତ୍ୟକ୍ତ ନକରି ସିଧାସଳଖ ମାନିଯିବ । ନହେଲେ... ।"

ସେଦିନ ସ୍କୁଲ୍‌ରୁ ଫେରୁଥିବା ବାଟରେ ରାଇସକୁଳ ଦଣ୍ଡାରେ ଆମର ମିଟିଂ ହେଲା । ଆସନ୍ତା କାଲିକୁ କିପରି ସମ୍ମୁଖୀନ ହେବା, ତାହାହିଁ ଥିଲା ଆମମାନଙ୍କର ଏକମାତ୍ର ଚିନ୍ତା । ସୁଧାକର କହିଲା "ନଟିଆ ମାଷ୍ଟର ମାରିବ ତ ! କେତେ ମାରିବ ମାରୁ । ଦାନ୍ତ ଓଠ ଚାପି ସହିଗଲେ କାମ ଫତେ । ତାପରଦିନ ସବୁଆଡ଼େ ପୁଣି ଲେଖାହେବ-

ଡାଳିମ୍ବ ଗଛରେ ପାଣି ଦଉଦଉ କଦମ୍ବ ଗଛ ମଲା ।

ଦଉଡି ଆସରେ ଇସ୍କୁଲିଆ ପିଲା ନଟିଆ ମାଷ୍ଟର ମଲା ।"

ସମ୍ଭାବ୍ୟ ଭୟ ଓ ଆଶଙ୍କା ମନ ଭିତରେ ଉବୁଟୁବୁ ହେଉଥିଲେ ମଧ୍ୟ ଆମେ ସମସ୍ତେ କିର୍‌କିର୍ ହୋଇ ହସି ଉଠିଲୁ । ସୁଧାକର ଅଧିକ ଉତ୍ସାହିତ ହୋଇ କହିଲା, 'ଖାଲି କଣ ନଟିଆ ମାଷ୍ଟର ? ଆମ ପଛରେ ଯିଏ ଲାଗିବ, ତାକୁ ଆମେ ଛାଡ଼ିବାନି । ତା ନାଁରେ ଲେଖାହେବ । ଲେଖିବାକୁ ପରା ଆମ 'କୋବିବାବୁ' ଅଛନ୍ତି ।" ସୁଧାକର ମୋ ଆଡକୁ ଇଙ୍ଗିତ କରି କହିଲା ।

କରୁଣା ସାର୍‌ଙ୍କ ନାଁରେ ଏସବୁ ଲେଖିବା ପଛରେ ଯେଉଁ କାରଣଟି ଥିଲା, ତାହା ଆମ ପାଇଁ ଥିଲା ପ୍ରଚୁର ଲଜ୍ଜା ଓ ଅପମାନର ବିଷୟ ।

ଗଣେଶ ପୂଜାଦିନ, ପୂଜା ଆରମ୍ଭ ହେବା ପୂର୍ବରୁ ଆମେ ସବୁ ମହାଆନନ୍ଦରେ ସ୍କୁଲ ହତା ବାହାରେ ବୁଲୁଥିଲୁ । ସୁରିଆ ଗୋଟେ ବଢ଼ିଆ ପ୍ରସ୍ତାବ ଦେଲା - "ଚାଲ, ଆଜି ପଞ୍ଚୁଆ ଦୋକାନରୁ ପାନ ଖାଇବା ।"

ସୁଧାକର, ମୁଁ ଭାଗୁ, ବଗୁଲି, ବାଆଜି, ସମସ୍ତେ ରାଜି ହୋଇଗଲୁ ଏ ମନମୁଗ୍ଧକର ପ୍ରସ୍ତାବରେ । ସୁରିଆ କହିଚାଲିଥାଏ ପାନ ଖାଇ ଓଠ ନାଲିକରି ଝିଅପିଲାମାନଙ୍କ ସାଙ୍ଗରେ କଥାହେଲେ ଭାରି ମଜା ହେବ । 'ଜାଣିଛନା, ପାନଖିଆ ଟୋକାମାନଙ୍କୁ ଝିଅପିଲାମାନଙ୍କର ଭାରି ପସନ୍ଦ ।' ସୁରିଆ କଥାଗୁଡ଼ା ଆମକୁ ଭାରି ଭଲ ଲାଗୁଥିଲା । ଦଶଖଣ୍ଡ ସାଧାପାନ । ଟଙ୍କିକିଆଟେ ବଢ଼ାଇ ଦେବାପରେ ପଞ୍ଚୁଆବୁଢ଼ା ବଢ଼ାଇ ଦେଲା ଆମ ଆଡ଼କୁ । ମହା ଆନନ୍ଦରେ ପାନ ଚୋବାଇ ଚୋବାଇ ସ୍କୁଲକୁ ଆସୁଥିବାବେଳେ ଆମେ ପଡ଼ିଗଲୁ କରୁଣା ସାର୍‌ଙ୍କ ହାବୁଡରେ ।

'ସମସ୍ତେ ଏଠିକି ଆସ ।' - ରାସ୍ତା ଉପରେ ଠିଆ ହୋଇ ଭାରୀଗଳାରେ ଡାକିଲେ କରୁଣା ସାର୍ ।

ଚୋରଙ୍କ ପରି ତଳକୁ ମୁହଁ ପୋତିପୋତି ଆମେ ଯାଇ ଠିଆ ହେଲୁ ତାଙ୍କ ସାମ୍ନାରେ । କାହାରି ମୁହଁରେ ଉଁ କି ଚୁଁ ବୋଲି ଶବ୍ଦଟେ ନଥିଲା ସେତେବେଳେ ।

'ଆଁ' କର ସମସ୍ତେ ।' - ଆଦେଶ ଦେଲେ କରୁଣା ସାର୍ - 'ଜିଭ ବାହାରକର ପଦାକୁ ।'

ତାଙ୍କ କହିବା ମୁତାବକ ଆମେ କରିବାକୁ ବାଧ୍ୟ ହେଲୁ । ନକରି ଗତ୍ୟନ୍ତର ନଥିଲା । ସେତେବେଳେକୁ ସେଠି ସ୍କୁଲର ପ୍ରାୟ ଅଧିକାଂଶ ପିଲା ଜମି ସାରିଲେଣି । ଝିଅ ପିଲାମାନେ ଆମକୁ ଦେଖି ମୁର୍କି ମୁର୍କି ହସୁଥିଲେ । ଲଜ୍ଜାରେ ଜଡସଡ ହୋଇଯାଉଥିଲୁ ଆମେ ।

'ଫଟା ରସିକମାନେ, ପାନ ଖାଉଛ, ନାଇଁ ! ରୁହ ଟିକେ !' କରୁଣା ସାର୍ ବଡ଼ ପାଟିରେ ଡାକିଲେ - ପୂର୍ଣ୍ଣ ।'ସ୍କୁଲ୍ ପିଅନ ପୂର୍ଣ୍ଣ । କରୁଣା ସାର୍‌ଙ୍କ ବୋଲକରା । ଖାଲି କରୁଣାସାର୍‌ଙ୍କର ନୁହେଁ, ସବୁ ସାର୍‌ଙ୍କର । ଏବଂ ଝିଅପିଲାମାନଙ୍କର ମଧ୍ୟ । ପୂର୍ଣ୍ଣଟାର ଟିକେ ଆଲୁଦୋଷ ଅଛି । ତତ୍‌କ୍ଷଣାତ୍ ଆସି ପହଞ୍ଚିଗଲା ସେଠି ।

କରୁଣାସାର୍ କହିଲେ - ଜାଉଁଳିବେତ ଛ'ଟା । ଜଲ୍‌ଦି ।

ମାତ୍ର ଦୁଇମିନିଟ୍ ଭିତରେ ଗୋଛାଏ ବେତଧରି ପୂର୍ଣ୍ଣ ଲେଉଟି ଆସିଲା ।

"ମୂର୍ଖ, ଅପଗଣ୍ଡ, ଅପଦାର୍ଥ, ବେହିଆ, ଅଳରା, କୁଳାଙ୍ଗାର, ପାଠ ପଢ଼ିବାକୁ ଆସିଛ ନା ଛେନାଗୁଡ଼ ପଢ଼ିବାକୁ ? ଏତିକି ବକଟେ ବକଟେ ମେଞ୍ଚଡ ଟୋକା ଗାଲ ଚିପିଦେଲେ ଦୁଧ ବାହାରିପଡିବ, ପାନଖିଆ ଚାଲିଛି, ନାଇଁ !" - ଶୋଧା ସହିତ ଜାଉଁଳି ବେତ ନାଚକରି ଚାଲିଥାଏ ଆମ ମାନଙ୍କ ପିଠି ଓ ପିଚାରେ ।

ମାରି ମାରି ଯେତେବେଳେ ହାଲିଆ ହୋଇଗଲେ, ଫଟା ବେତଗୁଡ଼ିକୁ ରାଗରେ ଫୋପାଡି ଦେଇ ଚାଲିଯାଉଯାଉ କରୁଣା ସାର୍ କହୁଥିଲେ- 'ହବନାଇଁ । ତୁମମାନଙ୍କ ଦ୍ୱାରା ପାଠ ହବ ନାଇଁ । କାଇଁକି ବାପ ଦାଦାଙ୍କ ଅର୍ଥ ଶ୍ରାଦ୍ଧ କରୁଛ ? ବିଲରେ ହଳକର । ମଜୁରୀ ଖଟ । ସ୍କୁଲକୁ ଆସ ନାଇଁ କାଲିଠାରୁ !

କହିବା ବାହୁଲ୍ୟ ଆମମାନଙ୍କ ଦେହ ହାତ ଫୁଲିଯାଇଥିଲା । କାହାକାହା ଦେହରୁ ରକ୍ତ ମଧ୍ୟ ବୋହୁଥିଲା । ଆମ ଗଣେଷ ପୂଜା ସେଇଠି ଶେଷ ହେଲା । ସେଦିନ ରାତିରେ ଆମେ ମାଡ଼ୁଆମାନେ କେନାଲ ବନ୍ଧରେ ଏକାଠି ହୋଇ କରୁଣାସାର୍‌ଙ୍କ ନାଁ'ରେ ଚାରିଆଡ଼େ ଲେଖିବୁ ବୋଲି ନିଷ୍ପତ୍ତି ନେଇଥିଲୁ । ସେ ନିଷ୍ପତ୍ତି କାର୍ଯ୍ୟକାରୀ ହେଲା ତା' ପରଦିନ ବଡ଼ି ଭୋରରୁ ।

ପିଲାମାନଙ୍କୁ ଗାଈଗୋରୁପରି ବାଡାଉଥିବା କରୁଣା ସାର୍‌ଙ୍କୁ କେହି କିଛି କୁହନ୍ତି ନାଇଁ । ନା

ଅନ୍ୟଶିକ୍ଷକମାନେ, ନା ଅଭିଭାବକମାନେ । ସେମାନେ ଭଲ ଭାବେ ଜାଣନ୍ତି, କରୁଣାସାର୍ ମଣିଷଟି କେବେହେଲେ ଅନ୍ୟାୟକାମ କରୁନଥିବେ । ଯାହା କରୁଥିବେ ଅନ୍ୟର ଭଲ ପାଇଁ !

ଗୋରା ତକ୍‌ତକ୍, ନହନହକା ଚେହେରାଧାରୀ ମଣିଷଟିଏ । ସବୁବେଳେ ପିନ୍ଧିଥିବେ ଧଳା ଫିନ୍‌ଫିନ୍ ଧୋତି ଓ ପଞ୍ଜାବୀ । ସେସବୁ ଅତି ଯତ୍ନରେ ଇସ୍ତ୍ରୀ ହୋଇଥିବ । ଭାରି ଚୁପ୍‌ଚାପ୍ । ସତେ କି ସବୁବେଳେ ମନ ଭିତରେ କିଛି ଗୋଟାଏ ଜଟିଳ ତତ୍ତ୍ୱ ସମାଧାନରେ ମଗ୍ନ ! କଥା କମ୍ କାମ ବେଶୀ । ସାମାନ୍ୟ ବ୍ୟତିକ୍ରମ ସେ ସହିପାରନ୍ତି ନାହିଁ । ପ୍ରାର୍ଥନା ଘଣ୍ଟି ବାଜିବା ପରେ କିଏ ବିଳମ୍ବରେ ଆସିଲା, କାହା ପୋଷାକରେ କାଦୁଅ ଲାଗିଛି, କିଏ ନଖ କାଟି ନାହିଁ, ସେସବୁକୁ ସେ ଆଦୌ ବରଦାସ୍ତ କରିପାରନ୍ତିନି ।

ଭୂଗୋଳଠୁ ଆରମ୍ଭ କରି ସାହିତ୍ୟ, ଇତିହାସ, ନଗର ବିଜ୍ଞାନ ପର୍ଯ୍ୟନ୍ତ ସବୁ ବିଷୟ ସେ ପଢ଼ାନ୍ତି । ପାଠରେ ଯେମିତି, ଶାଠରେ ମଧ୍ୟ ସେମିତି । ଶେଷ ପିରିୟଡମାନଙ୍କରେ ପିଲାମାନଙ୍କୁ ସେ ଚମତ୍କାର ହିତୋପଦେଶ ଗପମାନ କୁହନ୍ତି । ଶ୍ରବଣକୁମାର, ରୋହିତାସ୍ୱ, ଧ୍ରୁବ, ପ୍ରହ୍ଲାଦ ଆଦି ପୌରାଣିକ ଚରିତ୍ରମାନଙ୍କ ବିଷୟରେ ଗପନ୍ତି । ଗାନ୍ଧିଜୀଙ୍କ ବାଲ୍ୟ ଜୀବନଠୁ ଆରମ୍ଭ କରି ମୃତ୍ୟୁପର୍ଯ୍ୟନ୍ତ ଘଟିଥିବା ପ୍ରତିଟି ଘଟଣା ବିଷୟରେ ଭାଷଣ ଦିଅନ୍ତି । ନିଶାଦ୍ରବ୍ୟ ସେବନକୁ ନିନ୍ଦା କରି କୁହନ୍ତି-

"ପାନ ବିଡ଼ି ନୁହେଁ ଛୋଟିଆ ନିଶା
ଜଣାପଡେ ନାଇଁ ଟାଣେ ପଇସା ।"

କେବଳ ଆମ୍ ସ୍କୁଲ୍‌ରେ ନୁହେଁ, ଆମ ଅଞ୍ଚଳରେ ବେଶ୍ ଲୋକପ୍ରିୟ ସେ । ଆଠଦଶ ଖଣ୍ଡି ମୌଜାରେ ଛୋଟବଡ଼ ନାନା କାମକାର୍ଯ୍ୟାଦିରେ ଆଗ ଖୋଜାପଡନ୍ତି ସେ । ଗାଁ ଗାଁ ଭିତରେ, ଘର ଘର ଭିତରେ, ଭାଇ ଭାଇ ଭିତରେ ବର୍ଷ ବର୍ଷ ଧରି ଚାଲିଥିବା କଳହ ଓ ମନୋମାଳିନ୍ୟ ଅତି ସୁରୁଖୁରୁରେ ସମାଧାନ ହୋଇଯାଏ ତାଙ୍କ ହସ୍ତକ୍ଷେପ ଫଳରେ । ପୂଜାପାର୍ବଣ ହେଲା, କରୁଣା ସାର୍‌ଙ୍କୁ ଡାକ । ବିଭାଘର ବ୍ରତଘର ହେଲା, କରୁଣା ସାର୍‌ଙ୍କୁ ଡାକ । କୋର୍ଟ କଚେରୀ, ଥାନା, ପୋଲିସ୍ ! କରୁଣା ସାର୍‌ଙ୍କୁ ଡାକ ।

ଲୋକମାନଙ୍କର ଏକ ଆବଶ୍ୟକତା ପାଲଟି ଯାଇଥିଲେ ସେ । ତାଙ୍କର ଦୁଇପଦ କଥାରେ ଥିଲା ଏକ ଆବେଗମୟ ଆଶ୍ୱାସନା, ତାଙ୍କ ଉପସ୍ଥିତି ହିଁ ଥିଲା ସବୁ ସମସ୍ୟାର ସମାଧାନ । ପ୍ରଚୁର ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇ ସେ ବଞ୍ଚୁଥିଲେ କିନ୍ତୁ ଏକ ସରଳ ଓ ସାବଲୀଳ ଜୀବନ । ମନେ ଅଛି, ନଟସାର୍ ତାପରଦିନ କ୍ଲାସ୍‌ରେ ଆମମାନଙ୍କୁ ଗୋଗଛ ପାହାର ପିଟିଥିଲେ ମଧ୍ୟ, କାହାପାଟିରୁ ବାହାରିନଥିଲା ସତକଥା । ଏତେସବୁ କାଣ୍ଡ କାରଖାନା ଚାଲିଥିବାବେଳେ କରୁଣା ସାର୍ କିନ୍ତୁ ଥିଲେ ନୀରବ । ଚୁପ୍‌ଚାପ ! ସତେକି ଏ ଘଟଣା ସମ୍ପର୍କରେ ସେ କିଛି ଜାଣନ୍ତି ନାହିଁ । ଜାଣିଲେ ବି ତାଙ୍କର କିଛି ଯାଏ ଆସେ ନାଇଁ !

ଆମେ ଯେଉଁମାନେ ଏ କାଣ୍ଡ କରିଥିଲୁ, ଭାବୁଥିଲୁ ଏବଂ ଆଶା କରୁଥିଲୁ କରୁଣାସାର୍ ଏକଥା ପଢ଼ି ବ୍ୟତିବ୍ୟସ୍ତ ହୋଇପଡନ୍ତୁ । ଦୁଃଖ, ଲଜ୍ଜା ଅପମାନରେ ଝାଉଁଳି ପଡ଼ନ୍ତୁ। ଦୁଃଖରେ ମ୍ରିୟମାଣ ହୋଇଯାଆନ୍ତୁ । ମାସେ ଦିମାସ ଖଣ୍ଡେ ସ୍କୁଲକୁ ଆସନ୍ତୁ ନାଇଁ । ହେଲେ ଆମମାନଙ୍କ ଆଶା ଓ ଇଚ୍ଛାକୁ ଧୂଳିଷାତ୍ କରି କରୁଣାସାର୍ ଯଥାପୂର୍ବଂ ନିଜ କାର୍ଯ୍ୟରେ ବ୍ୟସ୍ତଥିଲେ ।

ସ୍କୁଲ୍ ଛାଡିବା ପରେ ଆଉ କରୁଣା ସାର୍ ଦେଖାହୋଇନାହାନ୍ତି । ଦୁଇ ଚାରିଥର ମଧ୍ୟ ସ୍କୁଲ୍‌କୁ ମୁଁ ଯାଇଛି, ହେଲେ ସେତେବେଳକୁ ସେ ଅବସର ନେଇ ସାରିଥିଲେ । ଏବେ, ତେଇଶ୍ ବର୍ଷପରେ, ଛତ୍ରପୁର ବଜାର ଉପରେ, ଗୋଟେ ଛୋଟିଆ କେବିନ୍ ଭିତରେ, ପାନ ସିଗାରେଟ୍, ଗୁଡ଼ାଖୁ, ବିଡିଙ୍କ ଗହଣରେ କରୁଣାସାର୍ ! 'ମତେ ସେ ଚିହ୍ନି ପକାଇଲେ କି ? ମୁଁ ଏକରକମ ଛାନିଆ ହୋଇଗଲି । ବୋଧହୁଏ ନା । ତେଇଶିବର୍ଷ ଭିତରେ ଅନେକ ପରିବର୍ତ୍ତନ, ମୋ ଭିତରେ, ବାହାରେ । ଯେତେବେଳେ ମୁଁ ତାଙ୍କୁ ଚିହ୍ନି ପାରିଲିନି, ସେ ବା କିପରି ଚିହ୍ନିବେ ? ସହଜେ ତ ତାଙ୍କ ଦୃଷ୍ଟିଶକ୍ତି କ୍ଷୀଣ ! ସୁଧାକର କହିଲା – "ମନେ

ଅଛି, ଥରେ ଆମେ ସାଧାପାନ ଖଣ୍ଡେ ଖାଇଦେଇଥିଲେ ବୋଲି କି ମାଡ ମାରିଥିଲେ ଆମକୁ ? କେତେ ବଡ଼ ବଡ଼ ଭାଷଣ ଶୁଣାଉଥିଲେ ନିଶାଦ୍ରବ୍ୟ ବିରୁଦ୍ଧରେ ! ଏବେ ଦେଖ ! ସମୟ କାହାକୁ କେତେବେଳେ ନେଇ କେଉଁଠି ରଖେ, ସତରେ !! ପିଲାମାନେ ପଚାରୁନାହାନ୍ତି ! ବୁଢ଼ା ଭାରି ଦୁଃଖରେ ଅଛି ।"

ସୁଧାକର ଚାଲିଗଲା ତା କାମରେ ! ମୁଁ ପୁଣିଥରେ ଗଲି ସେଇ କେବିନ୍ ପାଖକୁ । ନିରେଖି ଚାହିଁଲି ତା ଭିତରେ ବସିଥିବା ବୁଢ଼ାମଣିଷଟିକୁ । କ'ଣ ପାଇଁ କେଜାଣି ମୋ ଆଖିରେ ଢକେଇ ଆସିଲା ଲୁହ ! କେଉଁ ଅଜଣା ଦୁଃଖରେ ଅବା ଅସହାୟତାରେ ଜଣେ ନିଜର ଆଦର୍ଶକୁ ଜଳାଞ୍ଜଳି ଦିଏ ? ମୁଁ ବୁଝିପାରୁନଥିଲି କିଛି ! ମୁଁ ବେଶୀ ସମୟ ଠିଆ ହୋଇପାରିଲିନି ସେଠି । କିଛି ଜିନିଷ କିଣିଲି, ଯାହା ମୋର ବିଶେଷ ଦରକାର ନଥିଲା । ପ୍ରାୟ ଅଶୀ କି ନବେ ଟଙ୍କାର ଜିନିଷ ! ହଜାରେ ଟଙ୍କିଆ ନୋଟ୍ ଖଣ୍ଡେ ତାଙ୍କ ଆଡ଼କୁ ବଢ଼ାଇଦେଇ କହିଲି - "ଟିକେ ସେପଟ ଦୋକାନରୁ ଆସୁଛି, ପଇସା ନେବି । ଆଉ କିନ୍ତୁ ଆସିଲିନି ! ଫେରିଗଲି ଭୁବନେଶ୍ୱର । ଫେରିଗଲି ଏବଂ ଫେଣ୍ଟି ହୋଇଗଲି ନିଜ ଦୈନନ୍ଦିନତାରେ । ଅଫିସ୍ କାମରେ । ପିଲାଛୁଆ ଜଞ୍ଜାଳରେ । ଆହାରରେ, ନିଦ୍ରାରେ, ମୈଥୁନରେ ।

ବାପାଙ୍କ ଶ୍ରାଦ୍ଧ ଦେବାପାଇଁ ଗାଁକୁ ଯାଇଥାଏ । କାମଦାମ ସାରି ସେଦିନ ରାତିରେ ରହିଲି ଗାଁରେ । ସଂଜବେଳେ ଆଡୁସାଡୁ ଗପୁଗପୁ ବୋଉ ହଠାତ୍ ମନେ ପକାଇବା ପରି କହିଲା- 'ହଇରେ, ତମ ସ୍କୁଲର କରୁଣା ମାଷ୍ଟର, ଗତ ମାସରେ ଆସିଥିଲା ଆମ ଘରକୁ । ନ'ଶହ ବାରଟଙ୍କା ଆଣି ମତେ ଦେଇଗଲା, ତତେ ଦେଇଦେବାକୁ । କଥା କ'ଣ କିରେ ? ତୋଠାରୁ ଧାରକରଜ ନେଇଥିଲା ନା କଣ ?

ମୁଁ ଗୁମ୍ ଖାଇ ବସିଗଲି । ଟଙ୍କା ବିଷୟରେ ବୋଉକୁ କିଛି ନ କହି କେବଳ କହିଲି - 'କାଲି ତାଙ୍କ ଗାଁ'କୁ ଯିବି । ତାଙ୍କୁ ଟିକେ ଦେଖାକରିବି ।

'ସେପରା ଗତ ଶନିବାର ଦିନ ମରିଗଲେ ।'

ବୋଉ କହିଲା । 'ମରିଗଲେ !!' ଏ ଶବ୍ଦଟି ଚିତ୍କାର କରିଆରେ କିମ୍ବା ନୀରବରେ, ମୋ ପାଟିରୁ ବାହାରି ଆସିଲା, ମୁଁ ଜାଣିପାରିଲିନି ।



# ମୃଗତୃଷ୍ଣାର କାବ୍ୟ

## ଯୁଗଳ କିଶୋର ଦତ୍ତ



ପୋର୍ଟିକୋ ଭିତରେ ଗାଡ଼ିରଖି ଓହ୍ଲାଇ ଆସିଲେ ମିସେସ୍ ଶୋଭନା ମାଲହୋତ୍ରା । କଲିଙ୍ଗ ବେଲ୍‌ରେ ଆଙ୍ଗୁଠି ରଖି ଘଡ଼ିକୁ ଦେଖିଲେ । କର୍ଣ୍ଣେଲ ମାଲହୋତ୍ରା ବୋଧହୁଏ କେତେବେଳେ ଫେରି ଆସିବେଣି । ସେ ଜାଣନ୍ତି ମିଃ ମାଲହୋତ୍ରା ଘଡ଼ିକଣ୍ଟା ସହିତ ତାଳ ମିଳାଇ ଚାଲନ୍ତି ।

ଫେରିବାକୁ ଆଜି ବହୁତ ରାତି ହୋଇଗଲା । ମନେ ମନେ ଶଙ୍କିତ ହୋଇ ଉଠିଲେ ମିସେସ୍ ମାଲହୋତ୍ରା ।

ଥରେ... ଦୁଇ ଥର.... ତିନି ଥର ।

ତିନି ଥର କଲିଙ୍ଗ୍ ବେଲ୍ ଟିପିବା ପରେ ଖାନସାମା ଦୁଆର ଖୋଲି ଦେଲା । ମିସେସ୍ ମାଲହୋତ୍ରା ଆଶ୍ୱସ୍ତ ହେଲେ । ନା- କର୍ଣ୍ଣେଲ ତା' ହେଲେ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି ।

କିଛିଦିନ ହେଲା ମିସେସ୍ ମାଲହୋତ୍ରା ଅନୁଭବ କରି ପାରୁଛନ୍ତି, କର୍ଣ୍ଣେଲ ମାଲହୋତ୍ରା ଯେପରି ତାଙ୍କର ଏହି ଡେରିରେ ଫେରିବା ନେଇ ମନେ ମନେ ଅସନ୍ତୁଷ୍ଟ ଅଛନ୍ତି । କିନ୍ତୁ ପ୍ରତିବାଦ କରି ନାହାନ୍ତି ।

ବାଲକନିରେ ଆସି ଠିଆହେଲେ ମିସେସ୍ ମାଲହୋତ୍ରା । ପୂର୍ଣ୍ଣମୀ ଚନ୍ଦ୍ରର ଆଲୋକରେ ଆକାଶଟା ଆହୁରି ଉଜ୍ଜଳ ଦେଖାଯାଉଛି । ଶିରି ଶିରି ପବନରେ ଦେହ ଶିତେଇ ଶିତେଇ ଉଠୁଛି । ଦୂରର ପାହାଡ ଉପରେ ଆଖି ରଖି କ'ଣ ଯେପରି ଭାବିଲେ ମିସେସ୍ ମାଲହୋତ୍ରା । ଆଉ କିଛି ସମୟ ପରେ ଆକାଶର ରଙ୍ଗ ବଦଳି ଯିବ ।

ଆଉ ଦେଖିବାର ସମୟ ମଧ୍ୟ ନ ଥିବ ।

ଘଡ଼ିକୁ ଦେଖିଲେ ମିସେସ୍ ଶୋଭନା ମାଲହୋତ୍ରା । ରାତି ଗୋଟାଏ ବାଜି ପଚାଶ ମିନିଟ୍ । ବଡ଼ କ୍ଲାନ୍ତ ଲାଗୁଛି ।

କିଛି ସମୟ ପୂର୍ବେ ଡକ୍ଟର ମିତ୍ରଙ୍କ ସହିତ ସେହି ଦୂର ପାହାଡ ପାଖରେ ଥିବା ଝରଣା ନିକଟରେ ସେ ବସିଥିଲେ । ମିସେସ୍ ମାଲହୋତ୍ରା ଜାଣନ୍ତି, କର୍ଣ୍ଣେଲ ମାଲହୋତ୍ରା ରାତି ବାରଟା ପୂର୍ବରୁ ଘରକୁ ଫେରନ୍ତି ନାହିଁ; କିନ୍ତୁ ଡକ୍ଟର ମିତ୍ର କହିଥିଲେ, ଆଜି ଏତେ ଚଞ୍ଚଳ ହୋଇ ଉଠୁଛ ଯେ ଡାର୍ଲିଂ ?

ଡକ୍ଟର ମିତ୍ରଙ୍କ କୋଳରେ ମଥାରଖି ଉତ୍ତର ଦେଇ ପାରି ନଥିଲେ ମିସେସ୍ ମାଲହୋତ୍ରା । ମନେ ପଡିଯାଉ ଥିଲା ଦାର୍ଜିଲିଂର ସେହି ବରଫ ଝରା ସକାଳ କଥା । ଆଜି ଜ୍ୟୋସ୍ନାଝରା ରାତିପରି ସେଦିନ ବରଫଝରା ସକାଳରେ ଡକ୍ଟର ମିତ୍ରଙ୍କ ହାତଧରି ଫେରି ଆସୁଥିବା ବେଳେ କର୍ଣ୍ଣେଲ ମାଲହୋତ୍ରା ଦୂରବିନ୍ ଦେଇ ଦୁହିଁଙ୍କୁ ଦେଖିଥିଲେ । ଫେରି ଆସିବା ପରେ ଡକ୍ଟର ମିତ୍ରଙ୍କ କର ମର୍ଦ୍ଦନ କରିଥିଲେ । ଆଉ

ମିସେସ୍ ମାଲହୋତ୍ରାଙ୍କ ଆଡ଼େ ଚାହିଁ କହିଥିଲେ ହାଓ ଲଭ୍‌ଲି ୟୁ ଆର୍ ଡାର୍ଲିଂ ।

କିନ୍ତୁ କର୍ଣ୍ଣେଲ ମାଲହୋତ୍ରାଙ୍କ ଏହି ଡାର୍ଲିଂ ଡାକରେ ରୋମାଞ୍ଚିତ ହୋଇ ଉଠି ନାହାନ୍ତି ମିସେସ୍ ମାଲହୋତ୍ରା । ଡକ୍ଟର ମିତ୍ରଙ୍କ ଡାକରେ ମନେ ହେଉଥିଲା ତାଙ୍କୁ ଯେପରି କିଏ ନିଶ୍ଚିତ ଆଶ୍ରୟ ଦେଉଥିଲା ।

ଆର୍ମି କଲୋନୀରେ ଦୁହେଁ ଯିବାବେଳେ ମିସେସ୍ ମାଲହୋତ୍ରାଙ୍କ କାନରେ ଚପା କଥାର ସ୍ୱର ଶୁଭିଯାଇଛି ଅନେକ ଥର । ସିପାହୀମାନଙ୍କର ଶଙ୍କିତଭରା କଥା - କର୍ଣ୍ଣେଲଙ୍କ ଲେଡି ଆସୁଛନ୍ତି । କିନ୍ତୁ କ'ଣ ଦରକାର ଥିଲା, କର୍ଣ୍ଣେଲଙ୍କ ଏହି ବିଗତ ଯୌବନରେ ଗୋଟିଏ ତରୁଣୀକୁ ବିବାହ କରିବା ।

ଗେଟ୍ ଖୋଲି ପୋର୍ଟିକୋରେ ମଟର ରହିବା ଶବ୍ଦ ଶୁଣି ପାରିଥିଲେ ମିସେସ୍ ମାଲହୋତ୍ରା । ଘଡିକୁ ଦେଖିଲେ ରାତି ଦୁଇଟା ବାଜି ପଚିଶ ମିନିଟ୍ ।

କିଛି ସମୟ ପରେ କର୍ଣ୍ଣେଲ ମାଲହୋତ୍ରା ପାଖକୁ ଆସି ପଚାରିଥିଲେ- କେତେବେଳେ ଫେରିଲ ଡାର୍ଲିଂ । ମୋର ଆଜି ବହୁତ ରାତି ହୋଇଗଲା । କାଲି ସକାଳେ ଆମର ପଠାନ୍ ରେଜିମେଣ୍ଟର ମେଜର ହବିବୁଲା ଖାଁ ସୀମାନ୍ତକୁ ଯାଉଛନ୍ତି । ତେଣୁ ତାଙ୍କର ଫେୟାରଓ୍ୱେଲ ପାର୍ଟିରେ ମୋତେ ରହିବାକୁ ପଡିଲା ।

ସ୍ମିତହସ ମୁହଁରେ ଖେଳାଇ ମିସେସ୍ ମାଲହୋତ୍ରା କହିଥିଲେ, ମୋତେ ତୁମେ ଆଗରୁ କହି ନଥିଲ କାହିଁକି । ମୁଁ ତୁମ ପାଇଁ ଏଠାରେ ଦୀର୍ଘ ଚାରିଘଣ୍ଟା ହେଲା ଅପେକ୍ଷା କରିଛି । ତୁମେ ଥିଲେ ହୁଏତ କିଛିକ୍ଷଣ ଏଇ ଜ୍ୟୋତ୍ସ୍ନା ତଳେ ବୁଲି ଆସିଥାନ୍ତେ ।

କର୍ଣ୍ଣେଲ, ମିସେସ୍ ମାଲହୋତ୍ରାଙ୍କ ପିଠିରେ ହାତରଖି କୁହନ୍ତି, ଏ କବିତ୍ୱ ତୁମ ପାଖରେ ଶୋଭାପାଏ ଡାର୍ଲିଂ; କିନ୍ତୁ ଆର୍ମି ମ୍ୟାନ୍ ପାଖରେ ଏଗୁଡ଼ାକ ଅନେକ ସମୟରେ ଅର୍ଥହୀନ । ଆଚ୍ଛା ରାତି ଅନେକ ହେଲା ଚାଲ ଶୋଇବ ।

ମିସେସ୍ ମାଲହୋତ୍ରା କର୍ଣ୍ଣେଲଙ୍କ ମୁହଁକୁ ଚାହିଁ ଚୁପ୍ ହୋଇଯାଆନ୍ତି । ଭାବନ୍ତି, ଏ କଥାଗୁଡ଼ାକ କହି ନ ଥିଲେ ବୋଧହୁଏ ଭଲ ହୋଇଥାଆନ୍ତା ।

ବହୁ ପାର୍ଟିରେ ସେ ଯୋଗ ଦେଇଛନ୍ତି କର୍ଣ୍ଣେଲଙ୍କ ଅନୁରୋଧରେ ବଲ୍‌ଡ୍ୟାନ୍‌ସ କରିଛନ୍ତି । କିନ୍ତୁ ମିସେସ୍ ମାଲହୋତ୍ରାଙ୍କର ମନ ସେଥିରେ ସମ୍ମତି ଦେଇପାରିନି । ଟିକିଏ ସମୟ ପାଇଲେ ସେ ମୁକ୍ତ ଆକାଶ ତଳେ ବୁଲିବାକୁ ଚାଲିଯାଆନ୍ତି । ଏକା ରହିବାକୁ ଭଲ ପାଆନ୍ତି ।

କିନ୍ତୁ ଆର୍ମି ରେଜିମେଣ୍ଟର ଲୋକେ କୁହନ୍ତି ମିସେସ୍ ମାଲହୋତ୍ରା ଭେରି ଅନ୍ କନ୍‌ଭେନ୍‌ଶନାଲ୍ । କାହାରି ସହିତ ମିଶିବାକୁ ଚାହାନ୍ତି ନାହିଁ ।

ସେମାନେ ନିଜ ନିଜ ଭିତରେ କଥା ହୁଅନ୍ତି - ନିଜ ବୟସଠାରୁ ବେଶୀ ବୟସର ଲୋକକୁ ବିବାହ କରି କେହି କେବେ ସୁଖୀ ହୋଇପାରିଛି ।

କିନ୍ତୁ ନିଜ ବୟସ ଠାରୁ କୋଡିଏ ବର୍ଷର ବ୍ୟବଧାନ ଥିବା କର୍ଣ୍ଣେଲ ମାଲହୋତ୍ରାଙ୍କୁ ବିବାହ କରିଥିଲେ ଶୋଭନା ଗୁପ୍ତା ।

ଶୋଭନା ଦେଖିବାକୁ ଅତ୍ୟନ୍ତ ସୁନ୍ଦରୀ । ନିଜର ଦେହ ସୌଷ୍ଠବ ପାଇଁ ଗର୍ବ କରିବାର ଅଧିକାର ତାଙ୍କର ଥିଲା । ବାପାଙ୍କ ସହିତ ହୋଟେଲ, ପାର୍ଟିମାନଙ୍କରେ ଚପା ସ୍ୱର ଶୁଣିଛନ୍ତି- ହାଓ ବିଉଟିଫୁଲ ସି ଇଜ୍ । ସତେ ଅବା ଗୋଟିଏ ଗୋଲାପ କଢ଼ ।

ଦିନେ କର୍ଣ୍ଣେଲ ମାଲହୋତ୍ରା ହସି ହସି କହିଥିଲେ, ଶୁଣିଛି ଡାର୍ଲିଂ ମୋର ରେଜିମେଣ୍ଟର ସାଙ୍ଗମାନେ କୁହନ୍ତି ତୁମେ ଗୋଟିଏ ଟ୍ରପିକାଲ ବାର୍ଡ ।

ତୁମର ପରିବେଶ ବୋଧହୁଏ ତୁମକୁ ବନ୍ଦୀକରି ରଖିଥିବା ପରି ମନେହୁଏ ।

କର୍ଣ୍ଣେଲ୍‌ଙ୍କ ପରି ହସି ପାରି ନଥିଲେ ମିସେସ୍ ମାଲହୋତ୍ରା । ହସିବାକୁ ଯାଇ ଯେପରି ଅଟକି ଯାଇଥିଲେ ।

ନାଚ-ପାର୍ଟି -ମଦ ଆଉ ଭଲ ଲାଗୁ ନଥିଲା ଶୋଭନାଙ୍କୁ । ମନେ ହେଉଥିଲା ତାଙ୍କର ଜୀବନରେ ରୋମାଞ୍ଚକର ଉଲ୍ଲାସ ବିଦାୟ ନେଇଛି । କେବଳ ମିସେସ୍ ମାଲ୍‌ହୋତ୍ରା ରୂପେ ତାଙ୍କୁ ବଞ୍ଚି ରହିବାକୁ ପଡ଼ିବ । କର୍ଣ୍ଣେଲ୍‌ଙ୍କ ମନକୁ ଖୁସି କରିବା ଲାଗି ମୁହଁରେ ହସ ଫୁଟାଇ ଏ ସମାଜର ଧରାବନ୍ଧା ରୁଟିନ ଭିତରେ ରହିବାକୁ ପଡିବ ।

ପାର୍ଟିରେ ସେ ଶୁଣିଛି କର୍ଣ୍ଣେଲଙ୍କୁ ଜଣେ କିଏ କହିଥିଲେ - ରିୟେଲି ତୁମ ମିସେସ୍‌ଙ୍କ ଆଖି ଦୁଇଟି ଯେପରି ଦୁଇଟି ନୀଳପଦ୍ମ । ତୁମେ ସେ ଆଭା କେବେ ଦେଖି ପାରିଛ ।

ଉପମାଟା ମିସେସ୍ ମାଲହୋତ୍ରାଙ୍କୁ ଖୁବ୍ ଭଲ ଲାଗିଥିଲା । କହିବା ଲୋକଙ୍କୁ ଥରେ ଦେଖିବା ପାଇଁ ଆଖି ଫେରାଇ ଥିଲେ; କିନ୍ତୁ କର୍ଣ୍ଣେଲଙ୍କ ମୁହଁକୁ ଚାହିଁ ତାଙ୍କର ସମସ୍ତ ଆବେଗ ମରି ଯାଇଥିଲା । କର୍ଣ୍ଣେଲଙ୍କ ମୁହଁ ରାଗରେ ଯେପରି ଥରି ଉଠୁଥିଲା ।

ଶୋଭନା ଗୁପ୍ତା ନିଜେ ବାଛି ନେଇଥିଲେ ଏଇ ପରିଣତ ବୟସର କର୍ଣ୍ଣେଲ ମାଲହୋତ୍ରାଙ୍କୁ ଜୀବନର ସାଥିରୂପେ ।

ବହୁଦିନର କଥାଗୁଡ଼ାକ ମନେ ପଡି ଯାଇଥିଲା ମିସେସ୍ ମାଲହୋତ୍ରାଙ୍କର ।

ବେଡ ରୁମ୍‌କୁ ଆସି ଦେଖିଲେ କର୍ଣ୍ଣେଲ ଶୋଇପଡିଲେଣି । ବୋଧହୁଏ ଆଜି ମାତ୍ରାଟା ଟିକିଏ ବେଶୀ ହୋଇଯାଇଛି । ଝରକା ଦେଇ ଆଉ ଥରେ ଆକାଶକୁ ଚାହିଁଲେ ମିସେସ୍ ମାଲହୋତ୍ରା, ନା- ସେ ବଡ଼ ଏକା - ବଡ଼ ନିଃସହାୟ ।

ଆର୍ମି କଲୋନୀର, ଡକ୍ଟର ମିତ୍ରଙ୍କ ସହିତ ପରିଚୟ ହୋଇ ନଥିଲେ, ମିସେସ୍ ମାଲହୋତ୍ରାଙ୍କର ଜୀବନର ପରିବର୍ତ୍ତନ ବୋଧହୁଏ ଏପରି ହୋଇ ନଥାଆନ୍ତା ।

ସେଦିନ ବଲରୁମ୍‌ରେ ନାଚ ଚାଲିଛି । କର୍ଣ୍ଣେଲ ମାଲହୋତ୍ରା ମିସ୍ ଜୋସେଫଙ୍କୁ ନେଇ ନାଚି ଚାଲିଛନ୍ତି । ହଠାତ୍ କାନ ପାଖରେ କିଏ ଯେପରି କହିଥିଲା - ଆପଣ ମୋତେ ସାହାଯ୍ୟ କରିପାରିବେ । ଲଜ୍ଜିତ ହୋଇଥିଲେ ଶୋଭନା ମାଲହୋତ୍ରା । କିନ୍ତୁ ସୌଜନ୍ୟତା ଦୃଷ୍ଟିରୁ ଉଠି ଠିଆ ହୋଇଥିଲେ । ଆଉ, ହାତ ବଢ଼ାଇ ଦେଇଥିଲେ ଡକ୍ଟର ମିତ୍ରଙ୍କଆଡେ । କର୍ଣ୍ଣେଲ ସେତେବେଳେ ମିସ୍ ଜୋସେଫଙ୍କୁ ନିଜର ଛାତି ପାଖକୁ ଆହୁରି ଟାଣି ନେଇ ନାଚି ଚାଲିଛନ୍ତି ।

ଡକ୍ଟର ମିତ୍ର, ମିସେସ୍ ମାଲହୋତ୍ରାଙ୍କ ଆଖି ଦୁଇଟିକୁ ବାରମ୍ବାର ଦେଖିବାକୁ ଲାଗିଲେ ।

ନାଚୁ ନାଚୁ ମିସେସ୍ ମାଲହୋତ୍ରା ଡକ୍ଟର ମିତ୍ରଙ୍କ ଦେହ ଉପରେ ନିଜର ଦେହଟାକୁ ସମ୍ପୂର୍ଣ୍ଣଭାବେ ଛାଡ଼ି ଦେଇଥିଲେ । ଦେହଟା ଥରି ଥରି ଉଠିଥିଲା । ଆଉ ସେ କଣେଇ କଣେଇ ଥରେ ଦେଖୁଥିଲେ ଡକ୍ଟର ମିତ୍ରଙ୍କ ଆଖିକୁ ଆଉ ଥରେ କର୍ଣ୍ଣେଲଙ୍କ ନାଚକୁ । ମିସେସ୍ ମାଲହୋତ୍ରାଙ୍କ ଅଣ୍ଟା ଉପରେ ଡକ୍ଟର ମିତ୍ରଙ୍କ ହାତ ଆହୁରି ନିବିଡ଼ ହୋଇ ଉଠିଥିଲା ।

କ୍ଲାନ୍ତ ହୋଇ ପଡିଥିଲେ ମିସେସ୍ ମାଲହୋତ୍ରା । ନାଚପରେ କର୍ଣ୍ଣେଲ ମାଲହୋତ୍ରା, ଡକ୍ଟର ମିତ୍ରଙ୍କ ସହିତ କର ମର୍ଦ୍ଦନ କରିଥିଲେ । ଆଉ ମିସେସ୍ ମାଲହୋତ୍ରାଙ୍କ କାନ୍ଧ ଉପରେ ହାତ ରଖି ଢ଼ଳି ଢ଼ଳି ମଟର ପାଖକୁ ଆସିଥିଲେ ।

ସେହି ଦିନଠାରୁ ପ୍ରତିଦିନ ଆସନ୍ତି ଡକ୍ଟର ମିତ୍ର । ଆଉ ମିସେସ୍ ମାଲହୋତ୍ରା ଅନୁଭବ କରନ୍ତି, ଏ

ଜୀବନରେ ଯଦି ସେ ସୁଖ ପାଇବାକୁ ଚାହାନ୍ତି ତାହା କେବଳ ଡକ୍ଟର ମିତ୍ର ଦେଇପାରିବେ; କିନ୍ତୁ ସଙ୍କୋଚ ଆସିଛି ।

ଏହା କ'ଣ ହୋଇପାରେ ?

କର୍ଣ୍ଣେଲଙ୍କ ପରେ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କ ସ୍ତ୍ରୀ ମିଲିଟାରୀ କଲୋନୀର ଜଣେ ଡାକ୍ତରଙ୍କ ପ୍ରେମରେ ପଡିପାରିବେ ?

ମନେ ମନେ ସିଦ୍ଧାନ୍ତ ନେଇଥିଲେ ମିସେସ୍ ମାଲହୋତ୍ରା । ଆଉ ଗୋଟାଏ ମୁହୂର୍ତ୍ତ ନଷ୍ଟ କଲେ ହୁଏତ ସାରା ଜୀବନଟା ଅନୁଶୋଚନାରେ ବିତାଇବାକୁ ହେବ । ସେଥିରେ ମଧ୍ୟ ଡକ୍ଟର ମିତ୍ରଙ୍କ ସମ୍ମତି ସେ ଅନୁଭବ କରିଥିଲେ । ସମାଜର ସ୍ୱୀକୃତିକୁ ନେଇ କୌଣସି ଦିନ ବିବ୍ରତ ହୋଇ ନ ଥିଲେ ଶୋଭନା ମାଲହୋତ୍ରା । କିଏ ପସନ୍ଦ କଲା କି ନାହିଁ ସେଥିପ୍ରତି ନଜର ଦେଇ ନଥିଲେ ।

ପ୍ରଥମେ ସମାଲୋଚନା ଟିକିଏ କଠୋର ହେବ ସେ ଜାଣନ୍ତି । କିନ୍ତୁ ଏସବୁକୁ କାନ ନ ଦେଇ ଯଦି ନିଜ ମନରେ ନିଜେ ଠିକ୍ ରହିବେ ତେବେ କିଛି ଦିନ ପରେ ଏ ସମାଲୋଚନା ଆପେ ଆପେ ବନ୍ଦ ହୋଇଯିବ ବୋଲି ସେ ବୁଝିଥିଲେ ।

ସେ ବିବ୍ରତ ନୁହନ୍ତି; କିନ୍ତୁ ବିବ୍ରତ କରିଥିଲା ଡକ୍ଟର ମିତ୍ରଙ୍କୁ ଭଲ ପାଇବା, ଏମିତି ଭଲ ପାଇବା ସେ ଜୀବନରେ କାହାରି ପାଖରୁ ପାଇ ନଥିଲେ । ଜୀବନରେ ପରିବର୍ତ୍ତନ ହୁଏ ବୋଲି ଶୋଭନା ମାଲହୋତ୍ରା କେବେ ଏମିତି ଭାବିପାରି ନଥିଲେ । ଗୋଟାଏ ମୁହୂର୍ତ୍ତରେ ଜୀବନଟାରେ ଏମିତି ପରିବର୍ତ୍ତନ ହୋଇଯିବ ଏ ଅଭିଜ୍ଞତା ତାଙ୍କର ନଥିଲା, ଆଉ ସେଥିପ୍ରତି ମଧ୍ୟ ପ୍ରସ୍ତୁତ ନଥିଲେ । କିନ୍ତୁ ଡକ୍ଟର ମିତ୍ର ଆକସ୍ମିକ ଭାବେ ତାଙ୍କ ଜୀବନରେ ଆସିଥିଲେ ।

ମନେ ମନେ ଭୟ ପାଇଥିଲେ ମିସେସ୍ ମାଲହୋତ୍ରା । ଅସ୍ୱସ୍ତିବୋଧ କରିଥିଲେ । ନିଜେ କ'ଣ ଭାବି ପାରିଥିଲେ ଜୀବନରେ ଏମିତି କେବେ ହେବ ବୋଲି ଛାତି ତଳଯାଏ ଯେପରି ବରଫ ପାଲଟି ଯାଇଥିଲା ।

କର୍ଣ୍ଣେଲ ମାଲହୋତ୍ରା; କିନ୍ତୁ ଆଶ୍ୱସ୍ତ ହୋଇଥିଲେ ମିସେସ୍ ମାଲହୋତ୍ରାଙ୍କ ମୁହଁରେ ହସ ଦେଖି । କର୍ମମୟ ଜୀବନକୁ ସରସ କରିବାକୁ ନାଇଟ କ୍ଲବକୁ ଯିବାକୁ ହେଉଥିଲା । କିନ୍ତୁ ସେଥିରେ ମିସେସ୍ ମାଲହୋତ୍ରାଙ୍କ ସମ୍ମତି ନଥିଲା । ତେଣୁ ଏକା ଏକା ଯିବାଦ୍ୱାରା ନାଇଟ କ୍ଲବରେ ତାଙ୍କର ସମ୍ମାନ ଉପରେ ଆଞ୍ଚ ଆସୁଥିଲା । ସ୍ୱାମୀଙ୍କ ସମ୍ମାନ ରଖିବାକୁ ଅନେକ ସମୟରେ ମିସେସ୍ ମାଲହୋତ୍ରା ନାଇଟ କ୍ଲବକୁ ଯାଉଥିଲେ । କିନ୍ତୁ ଅତ୍ୟଧିକ ମଦ୍ୟପାନ ଆଉ ବଲଡ୍ୟାନ୍‌ସକୁ ସେ ପସନ୍ଦ କରୁ ନଥିଲେ । କର୍ଣ୍ଣେଲ ସବୁ ବୁଝିପାରୁଥିଲେ । ଆଉ ମିସେସ୍ ମାଲହୋତ୍ରା ବୁଝିପାରିଥିଲେ, କର୍ଣ୍ଣେଲଙ୍କ ସମ୍ମାନକୁ ବଜାୟ ରଖିବାକୁ ମିସ୍ ଜୋସେଫର ଆବିର୍ଭାବ ହୋଇଥିଲା ।

ଡକ୍ଟର ମିତ୍ର, ମିସେସ୍ ମାଲହୋତ୍ରାଙ୍କ ଆଖି ଦୁଇଟିକୁ ଦେଖି ଓମର ଖାୟାମ କବିତାର କେତୋଟି ଲାଇନ ଶୁଣାଇଥିଲେ । ଆଉ ମିସେସ୍ ମାଲହୋତ୍ରା ମୁଗ୍ଧ ହୋଇ ଶୁଣି ତଳକୁ ମୁହଁ ପୋତି ଦେଉଥିଲେ ।

ଡକ୍ଟର ମିତ୍ର ଦେଖିଥିଲେ ସେହି ଗୋଲ୍‌ଡ଼େନ୍ ଆଇକ୍‌ର ଗଭୀର ନୀଳଶିଖା ଯେପରି ତାଙ୍କୁ ଆହୁରି ନିବିଡ ଭାବେ ଆବଦ୍ଧ କରି ରଖୁଛି । ହୁଏତ ଏଇ ଆଖି ଦୁଇଟି କହୁଥିଲା, ନିଆଁରେ ପୋଡ଼ି ହୋଇ ପତଙ୍ଗ ଯେପରି ମରିବାକୁ ଭଲପାଏ ତୁମେ ସେହିପରି ସାହସୀ ହୁଅ । ଆଉ ମିସେସ୍ ମାଲହୋତ୍ରା ହୁଏତ ଏମିତି ସାନ୍ତ୍ୱନା ଜୀବନସାରା ଖୋଜି ବୁଲିଥିଲେ ।

ଅନେକ ଜୋସ୍ନା ରାତିରେ ସେମାନେ ବୁଲିଛନ୍ତି । ପାଖାପାଖି ବସି ବହୁତ କଥା କହିଛନ୍ତି । ଗୋଟାଏ ଉଦ୍ଦାମ ଆକର୍ଷଣ ମନେ ମନେ ଅନୁଭବ କରନ୍ତି ମିସେସ୍ ମାଲହୋତ୍ରା; କିନ୍ତୁ ଛାତି ତଳର ସମସ୍ତ କଥା ଓଠ ପାଖରେ ପୁଣି ଲିଭିଯାଏ । ନିଷ୍ଠୁର ଯନ୍ତ୍ରଣାରେ ମିସେସ୍ ମାଲହୋତ୍ରାଙ୍କ ମୁଣ୍ଡ ବ୍ୟଥା କରିଉଠେ ।

ଋହୁଁ ଋହୁଁ ତିନିଟା ବର୍ଷ ବିତିଯାଇଛି କେହି ବୁଝିପାରି ନାହାନ୍ତି । ପ୍ରଥମ ଦୃଷ୍ଟିରେ ଦେହରେ ନିଆଁର ଉତ୍ତାପ ଅନୁଭବ କରିଥିଲେ । ତା'ପରେ ସେ ନିଆଁ ବିସ୍ତାର ଲାଭ କରିଥିଲା । ଦୁହେଁ ବୁଡ଼ି ଯାଇଥିଲେ, କିଛି ବୁଝିବା ପୂର୍ବରୁ, ଜାଣିବା ପୂର୍ବରୁ ସେ ନିଆଁ ସେମାନଙ୍କର ଋରିପାଖରେ ବ୍ୟୂହ ରଚନା କରିସାରିଥିଲେ । ମିସେସ୍ ମାଲହୋତ୍ରା ମନେ ମନେ ଶଙ୍କିତ ହୋଇ ଉଠୁଥିଲେ । କିନ୍ତୁ କାମନାର ଖରସ୍ରୋତ ତାଙ୍କୁ ବହୁତ ବାଟ ଭସାଇ ନେଇଥିଲା ।

ମିସେସ୍ ମାଲହୋତ୍ରା ଅନୁଭବ କରୁଥିଲେ, ଡକ୍ଟର ମିତ୍ର ତାଙ୍କ ଜୀବନରେ ଆସି ନଥିଲେ, ସେ କ'ଣ ବୁଝିପାରି ଥାଆନ୍ତେ ଭଲ ପାଇବା କାହାକୁ କୁହାଯାଏ । କିନ୍ତୁ କର୍ଣ୍ଣେଲ କ'ଣ ବୁଝିପାରୁ ନାହାନ୍ତି ତାଙ୍କର ଜୀବନରେ କିଛି ପରିବର୍ତ୍ତନ ହୋଇଛି ବୋଲି ।

ମିସେସ୍ ମାଲହୋତ୍ରା ଯେଉଁ ଭୟ କରିଥିଲେ, ତାହାର କୌଣସି ଲକ୍ଷଣ ସେ ଦେଖିବାକୁ ପାଇ ନଥିଲେ । କର୍ଣ୍ଣେଲ କିନ୍ତୁ ଖୁସି ହୋଇଥିଲେ ଯେତେବେଳେ ଜାଣିପାରିଲେ, ଏତେଦିନ ପରେ ମିସେସ୍ ମାଲହୋତ୍ରା ମା' ହେବାକୁ ଯାଉଛି, ଆଉ ସେ, ସନ୍ତାନର ବାପା ବୋଲି ପରିଚିତ ହେବେ ।

କର୍ଣ୍ଣେଲ ମାଲହୋତ୍ରାଙ୍କ ଆନନ୍ଦ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ ମିସେସ୍ ମାଲହୋତ୍ରା । ଅବାକ ହୋଇ କର୍ଣ୍ଣେଲଙ୍କ ମୁହଁକୁ ଋହିଁଥିଲେ । କର୍ଣ୍ଣେଲଙ୍କ ଏ ଆନନ୍ଦ ସତ, ନା ଅଭିନୟ । ତୀକ୍ଷ୍ଣ ଦୃଷ୍ଟିରେ; ଋହିଁ ସେ ଅନୁଭବ କରିଥିଲେ, ଏ ଆନନ୍ଦ ତାଙ୍କର ପ୍ରକୃତରେ ସତ୍ୟ । ଏଥିରେ ଅଭିନୟର କୌଣସି ଚିହ୍ନ ନଥିଲା ।

କିନ୍ତୁ ଡକ୍ଟର ମିତ୍ରଙ୍କ ଆସିବା ଦିନକୁ ଦିନ ଯେପରି କମି କମି ଯାଉଥିଲା । ତେବେ କ'ଣ ଡକ୍ଟର ମିତ୍ର, ମିସେସ୍ ମାଲହୋତ୍ରାଙ୍କୁ ସନ୍ଦେହ କରିବାକୁ ଆରମ୍ଭ କଲେ । ସେ କ'ଣ ମିସେସ୍ ମାଲହୋତ୍ରାର ଭଲ ପାଇବାଟାକୁ ଗୋଟାଏ ଅଭିନୟ ବୋଲି ଭାବିଛନ୍ତି । ସେ କ'ଣ ବୁଝିପାରିଲେ ନାହିଁ ଯେ, ମିସେସ୍ ମାଲହୋତ୍ରା; କର୍ଣ୍ଣେଲଙ୍କ ପାଖରେ ଅଭିନୟ କରି ପାରିଛି ବୋଲି ଡାକ୍ତର ମିତ୍ରଙ୍କ ପାଖରେ ମଧ୍ୟ ଅଭିନୟ କରୁଛି । କିପରି ତେବେ ସେ ବୁଝାଇବେ, ଏ ଭଲ ପାଇବାଟା ଅଭିନୟ ନୁହେଁ । ଏ ଭଲ ପାଇବାଟା ଜୀବନରେ ଧ୍ରୁବ ସତ୍ୟ ।

କର୍ଣ୍ଣେଲ ମାଲହୋତ୍ରା, ନିଜର ଘୁମନ୍ତ ସନ୍ତାନ ପାଖରେ ଅନେକ ସମୟରେ ଠିଆ ହୋଇ କ'ଣ ଦେଖନ୍ତି । ଆଉ ମିସେସ୍ ମାଲହୋତ୍ରାଙ୍କୁ ପାଖକୁ ଟାଣି ନେଇ କୁହନ୍ତି, ନାଓ-ୟୁ ଆର୍ ହ୍ୟାପି ।

ମିସେସ୍ ମାଲହୋତ୍ରା, କର୍ଣ୍ଣେଲଙ୍କ ମୁହଁକୁ ଅନାନ୍ତି, ଆଉ ଭାବନ୍ତି ଏତେ ଚତୁର, ବିଚକ୍ଷଣ ଆର୍ମି ଅଫିସର ଏତେ ବୋକା ହେଲେ କିପରି । ତେବେ କ'ଣ କର୍ଣ୍ଣେଲ ତାଙ୍କ ପାଖରେ ଅଭିନୟ କରୁଛନ୍ତି । ନା ନା ତାହା ହୋଇ ପାରେନା । ସେ ଜାଣନ୍ତି, ତାଙ୍କ ପ୍ରତି କର୍ଣ୍ଣେଲଙ୍କ ପ୍ରଗାଢ଼ ବିଶ୍ୱାସ ।

ନିଜକୁ ଅପରାଧୀ ମନେ କରନ୍ତି ମିସେସ୍ ମାଲହୋତ୍ରା ।

କିନ୍ତୁ ଡାକ୍ତର ମିତ୍ରଙ୍କର କ'ଣ ହେଲା, ଭରସି କରି କର୍ଣ୍ଣେଲଙ୍କୁ ପଋରିପାରେନା । ଦିନେ ହସି ହସି କର୍ଣ୍ଣେଲ ଘରକୁ ଆସି କହିଲେ, ଆଜି ଡାକ୍ତର ମିତ୍ର ନେଫା ଅଞ୍ଚଳକୁ ଋଲିଗଲେ । କିନ୍ତୁ ନିଜ ଇଚ୍ଛାରେ କେହି ସେହି ସ୍ଥାନକୁ ଯିବାକୁ ଋହିଁବ ମୁଁ ଭାବି ପାରି ନଥିଲି ।

ମୁହଁ ଶୁଖି ଯାଇଥିଲା ମିସେସ୍ ମାଲହୋତ୍ରାଙ୍କର । କର୍ଣ୍ଣେଲଙ୍କୁ କିଛି କହି ପାରି ନଥିଲେ । କାହିଁକି ଏମିତି ହେଲା । ତେବେ ଡାକ୍ତର ମିତ୍ର କ'ଣ ତାଙ୍କୁ ବିଶ୍ୱାସ କରିପାରିଲେ ନାହିଁ; ନା-କର୍ଣ୍ଣେଲ ମାଲହୋତ୍ରାଙ୍କର ଏଥିରେ କିଛି ଚକ୍ରାନ୍ତ ଅଛି ।

ଦେହ ଭାଙ୍ଗିଯାଇଥିଲା ମିସେସ୍ ମାଲହୋତ୍ରାଙ୍କର । ଆଉ କର୍ଣ୍ଣେଲ ବିଚଳିତ ହୋଇ ଉଠିଥିଲେ । ଅନେକ ଡାକ୍ତର ଆଣି ଦେଖାଇଥିଲେ । କିନ୍ତୁ ମିସେସ୍ ମାଲହୋତ୍ରାଙ୍କର ଶରୀରରେ କୌଣସି ଉନ୍ନତି ହୋଇନଥିଲା, ଡାକ୍ତରଙ୍କ ପରାମର୍ଶରେ କର୍ଣ୍ଣେଲ ମିସେସ୍ ମାଲହୋତ୍ରାଙ୍କୁ ନେଇଯାଇଥିଲେ କିଛି ଦିନ ପାଇଁ କାଶ୍ମୀର, ସ୍ଥାନ ପରିବର୍ତ୍ତନ ପାଇଁ ।

ସନ୍ତାନକୁ ଛାତିରେ ଚାପିଧରି ଅନେକ ବେଳଯାଏ ବସି ରୁହନ୍ତି ମିସେସ୍ ମାଲହୋତ୍ରା । ଚୁମାରେ ଚୁମାରେ ପିଲାଟାକୁ ବ୍ୟସ୍ତ କରି ପକାନ୍ତି ।

ଦିନେ ଡାକ୍ତର ମିତ୍ରଙ୍କୁ ଦେଖିଥିଲେ କାଶ୍ମୀରର ଗୋଟିଏ ପାହାଡ଼ ପାଖରେ । ଚମକି ଉଠିଥିଲେ ମିସେସ୍ ମାଲହୋତ୍ରା । ଏ କ'ଣ ରୂପ ହୋଇଛି ଡାକ୍ତର ମିତ୍ରଙ୍କର ପଚାରିଥିଲେ ହଠାତ୍ ତୁମେ ଏଠି । ତୁମର କ'ଣ ହେଲା ଯେ, ତୁମେ ମୋ ପାଖରୁ ଲୁଚି ଲୁଚି ଚାଲି ଆସିଥିଲ । ଆଉ ଏମିତି ରୋଗା ହୋଇ ଉଠିଲ କିପରି । ଏଠାର ଜଳବାୟୁ କ'ଣ ଦେହରେ ଯାଉନାହିଁ ?

ଅନେକ କିଛି ପଚାରିଥିଲେ ମିସେସ୍ ମାଲହୋତ୍ରା । ଡାକ୍ତର ମିତ୍ର କହିଥିଲେ ଆଉ ତୁମେ ! ଏତେ ରୋଗା ହୋଇଯାଇଛ କାହିଁକି । ତୁମର ଜୀବନରେ କିଛି ତ ହଜାଇବାକୁ ଦରକାର ପଡୁନି, କିମ୍ବା ତୁମର ଜୀବନରେ କୌଣସି ଅଭାବତ ନାହିଁ ।

ଚମକି ଉଠି ପ୍ରଶ୍ନ କରିଥିଲେ ମିସେସ୍ ମାଲହୋତ୍ରା- ତା'ମାନେ ?

ତୁମେ କ'ଣ ମୋତେ ସାରାଜୀବନ ବିଶ୍ୱାସ କରିପାରିଲ ନାହିଁ । ଆଉ ନିଜ ଜୀବନ ଉପରେ ଏମିତି ପ୍ରତିଶୋଧ ନେଲ । ଡକ୍ଟର ମିତ୍ରଙ୍କ ଛାତିରେ ମଥାରଖି କାନ୍ଦି ଉଠିଥିଲେ ମିସେସ୍ ମାଲହୋତ୍ରା ।

ତୁମେ ମୋତେ ଏତେ ଅବିଶ୍ୱାସ କରି ଭୁଲିଯିବ ମୁଁ ଭାବିପାରି ନଥିଲି । ତୁମର କଥାର ସ୍ୱର ଏବେ ମଧ୍ୟ ମୋ କାନପାଖେ ଶୁଭିଯାଏ । ମୋର ସନ୍ତାନକୁ ଛାତିତଳେ ଚାପିଧରି ତୁମର ସ୍ପର୍ଶ ମୁଁ ଅନୁଭବ କରେ । ମୁଁ ଯେ କି ଯନ୍ତ୍ରଣା ଅନୁଭବ କରୁଛି । ତୁମେ ଥରେ ହେଲେ କ'ଣ ବୁଝିପାରିବ ନାହିଁ ।

ଡାକ୍ତର ମିତ୍ର କହିଥିଲେ, ତୁମେ କ'ଣ ଜାଣନା ଆମର ଏଇ ଭଲପାଇବାଟା, କର୍ଣ୍ଣେଲ ମାଲହୋତ୍ରାଙ୍କ କାନରେ ଶୁଣାଇ ଦେଇଛି ମିସ୍ ଜୋସେଫ । ଆଉ ସେଥିଲାଗି ମୋତେ ଚାଲି ଆସିବାକୁ ପଡିଥିଲା ନେଫା ଅଞ୍ଚଳକୁ ।

ଚମକି ଉଠିଥିଲେ ମିସେସ୍ ମାଲହୋତ୍ରା । ଆଖି ଆଗରେ ନାଚିଉଠିଥିଲା ଅନେକ ଗୁଡାଏ ଚିତ୍ର । ସେ କିଛି ଦିନ ହେଲା ଲକ୍ଷ୍ୟ କରିଥିଲେ, ଘରକୁ ଫେରିବାର ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଫେରି ଆସୁଥିଲେ କର୍ଣ୍ଣେଲ ମାଲହୋତ୍ରା । ପାଗଳପରି ଘର ଭିତରେ ଘୁରି ବୁଲୁଥିଲେ । ଆଉ ସନ୍ତାନକୁ କୋଳକୁ ଟେକି ନେଉଥିଲେ । ପିଲାର ମୁଣ୍ଡର ବାଳ ଭିତରେ ହାତ ବୁଲାଇ ତା' ମୁହଁକୁ ନିରେଖି ଚାହୁଁଥିଲେ ।

ଚମକି ଉଠୁଥିଲେ ମିସେସ୍ ମାଲହୋତ୍ରା ଆଉ ବୁଝିପାରୁଥିଲେ କର୍ଣ୍ଣେଲଙ୍କ ମନତଳେ କିଛି ଗୋଟାଏ ଗୁପ୍ତକଥା ବସା ବାନ୍ଧିଲାଣି । ମୁହଁ ଖୋଲି କିଛି ପଚାରିପାରନ୍ତି ନାହିଁ । ଭୟରେ କର୍ଣ୍ଣେଲଙ୍କ ଛାତି ପାଖରେ ଆସି ପଚାରନ୍ତି ତୁମର ଦେହ କିଛି ଅସୁସ୍ଥ ହେଲା କି । ମିସେସ୍ ମାଲହୋତ୍ରାଙ୍କ ଆଖି ଉପରେ ଆଖି ରଖି କର୍ଣ୍ଣେଲ କୁହନ୍ତି ପୂର୍ବପରି ତୁମେ କ'ଣ ମୋର ଡାର୍ଲିଂ ହୋଇପାରିବ ନାହିଁ। ତୁମେ କ'ଣ ମୋତେ ଆଗପରି

ଭଲ ପାଇପାରିବ ନାହିଁ ।

କର୍ଣ୍ଣେଲଙ୍କ ଛାତି ଉପରେ ମଥାରଖି କାନ୍ଦି ଉଠନ୍ତି ମିସେସ୍ ମାଲହୋତ୍ରା । କୁହନ୍ତି- ମୋତେ ବିଶ୍ୱାସ କର । ତୁମର କିଛି ହଜିଯାଇନି । ତୁମର ଯାହାଥିଲା ତାହାହିଁ ଅଛି ।

ତା'ପରେ ହଠାତ୍ ଦିନେ ହୃଦ୍ ରୋଗରେ ଆକ୍ରାନ୍ତ ହୋଇପଡନ୍ତି କର୍ଣ୍ଣେଲ ମାଲହୋତ୍ରା । ଦିନକୁ ଦିନ ରୁଗ୍ଣ ହୋଇ ଉଠୁଥିଲେ । ସବୁବେଳେ କହୁଥିଲେ ସନ୍ତାନକୁ ମୋ ପାଖକୁ ଆଣ ଡାର୍ଲିଂ ତାକୁ ଥରେ ଆଖି ପୂରାଇ ଦେଖିଯାଏ ।

ଡକ୍ଟର ମିତ୍ରଙ୍କ ହାତ ଉପରେ ହାତ ରଖି ମିସେସ୍ ମାଲହୋତ୍ରା କହିଥିଲେ, ଆମର ମନର ବିଶ୍ୱାସ ତେବେ କ'ଣ ଏତେ କମିଗଲା । ନିଶ୍ଚଳ ହୋଇ ସବୁ ଶୁଣି ଯାଇଥିଲେ । ଡକ୍ଟର ମିତ୍ର କହିଥିଲେ ତୁମେ ମୋତେ ଭୁଲ ବୁଝନା ଡାର୍ଲିଂ । କେବଳ ତୁମରି ଭଲ ପାଇଁ ତୁମଠାରୁ ବହୁତ ଦୂରକୁ ଚାଲିଆସିଛି । ତୁମେ ବୁଝିପାରିବନି ଏ ବୁକୁତଳେ ମୁଁ ସର୍ବଦା କିପରି ଯନ୍ତ୍ରଣା ଅନୁଭବ କରୁଛି ।

ସଞ୍ଜ ନଇଁ ଆସିଥିଲା । ନିଜର ସନ୍ତାନକୁ କୋଳକୁ ନେଇ ଆଗକୁ ପାଦ ବଢ଼ାଇଥିଲେ ମିସେସ୍ ମାଲହୋତ୍ରା ।

ଫେରି ଫେରି ଚାହୁଁଥିଲେ ଧୀରେ ଧୀରେ ପାଦ ପକାଇ ଚାଲିଯାଇଥିବା ମଣିଷଟିକୁ; କିନ୍ତୁ ମନେ ହେଉଥିଲା ଦୌଡିଯାଇ ପୁଣି ସେହି ଛାତି ଉପରେ ମଥା ପିଟି କାନ୍ଦିବାକୁ । କିନ୍ତୁ ମିସେସ୍ ମାଲହୋତ୍ରା ପଥର ପରି ଠିଆ ହୋଇ ଯାଇଥିଲେ ।

ମନେ ମନେ ଭାବିଥିଲେ ତେବେ ଡକ୍ଟର ମିତ୍ରଙ୍କ ଭଲ ପାଇବା ମିଛ ?

ମିସେସ୍ ମାଲହୋତ୍ରାଙ୍କ ଆଖିରେ ଲୁହ ନଥିଲା । ତେବେ ଡକ୍ଟର ମିତ୍ର ନିଜର ଅକ୍ଷମତା ପାଇଁ କ'ଣ ଗର୍ବ ଅନୁଭବ କରନ୍ତି । କହିଥିଲେ - ତୁମେ ବଡ଼ ଭୀରୁ ଆଉ କାପୁରୁଷ ଡକ୍ଟର ମିତ୍ର ।

ବଡ଼ ଡେରିରେ ବୁଝିପାରିଛ ଡାର୍ଲିଂ । ତେଣୁ କହିଯାଏ, ଆଉ ଭଲ ପାଇବାକୁ ଚେଷ୍ଟା କରନା । ଜୀବନରେ ସ୍ୱପ୍ନ ଦେଖନା - ବଡ଼ ଦୁଃଖ ପାଇବ ।

କେତେ ଯୁଦ୍ଧ, କେତେ ମୃତ୍ୟୁ ଆଗରେ ମଥା ଟେକି, ଛାତି ଫୁଲାଇ ଆସିପାରିଛନ୍ତି, କର୍ଣ୍ଣେଲ ମାଇହୋତ୍ରା । କିନ୍ତୁ ଆଜି ସେ ଅସହାୟ । ସେ ନିଜ ସ୍ତ୍ରୀ ପାଖରେ କରୁଣା ଭିକ୍ଷା କରିଛନ୍ତି ।

ମିସ୍ ଜୋସେଫର କଥାକୁ ପ୍ରଥମେ ବିଶ୍ୱାସ କରି ନଥିଲେ । କିନ୍ତୁ ଡକ୍ଟର ମିତ୍ରଙ୍କର ଚିଠି କେତେଖଣ୍ଡି ସେ ପାଇଥିଲେ । ଯାହା ଲେଖା ହୋଇଥିଲା ମିସେସ୍ ମାଲହୋତ୍ରାଙ୍କ ସନ୍ତାନ ଜନ୍ମ ହେବାପରେ । ଭାବିଥିଲେ ମଣିଷକୁ ପ୍ରକୃତରେ ବୁଝିବା ବଡ଼ କଷ୍ଟକର ।

ଡକ୍ଟର ମିତ୍ରଙ୍କ ପାଖକୁ ଚିଠି ଲେଖି ଦେଇଥିଲେ । ଡକ୍ଟର ! ମୁଁ ଯଦି ମରିଯାଏ, ତେବେ ମିସେସ୍ ମାଲହୋତ୍ରା ଆଉ ତା'ର ସନ୍ତାନକୁ ତୁମେ ଅଣଦେଖା କରିବ ନାହିଁ । ସେମାନେ ତୁମର ।

ତା'ପରେ ଦିନକୁ ଦିନ ଭାଙ୍ଗି ପଡ଼ିଥିଲେ । ଆଉ କର୍ଣ୍ଣେଲ ମାଲହୋତ୍ରାଙ୍କ ମୁହଁକୁ ଦେଖି ମିସେସ୍ ମାଲହୋତ୍ରା ଚମକି ପଡ଼ିଥିଲେ । କିନ୍ତୁ କର୍ଣ୍ଣେଲ ଚିରଦିନ ଲାଗି ଆଖି ବୁଜିଲେ ।

କର୍ଣ୍ଣେଲଙ୍କ ମୃତ୍ୟୁପରେ ମିସେସ୍ ମାଲହୋତ୍ରା ଯେପରି ଜୀବନର ସମସ୍ତ କିଛି ହଜାଇ ପକାଇଥିଲେ । ଡକ୍ଟର ମିତ୍ର ନେଫା ଅଞ୍ଚଳରୁ ଦଉଡି ଆସିଥିଲେ । କିନ୍ତୁ ମିସେସ୍ ମାଲହୋତ୍ର । ନିର୍ବାକ, ନିଶ୍ଚଳ ହୋଇ କେବଳ ଚାହିଁଥିଲେ ।

ସନ୍ତାନକୁ କୋଳକୁ ନେଇ ମିସେସ୍ ମାଲହୋତ୍ରାଙ୍କ ମଥାରେ ହାତ ରଖିଥିଲେ ଡକ୍ଟର ମିତ୍ର ।

ଡାକିଥିଲେ - ଡାର୍ଲିଂ

କିନ୍ତୁ ଏ କ'ଣ । ଏତ ସେଇ ମିସେସ୍ ମାଲହୋତ୍ରା ନୁହେଁ । ଯାହାକୁ ନେଇ ସେ ସ୍ୱପ୍ନ ଦେଖିଥିଲେ । ଯାହାର ସମସ୍ତ ମଙ୍ଗଳ ପାଇଁ ଦୂରକୁ ଚାଲି ଯାଇଥିଲେ । କିନ୍ତୁ ପାଇଲେ କ'ଣ ।

ମିସେସ୍ ମାଲହୋତ୍ରାଙ୍କର ସେତେବେଳେ ମନ ହୋଇଥିଲା କହିବାକୁ, ଜାଣ ଡକ୍ଟର ମିତ୍ର - ଜୀବନରେ ସବୁଠାରୁ ଟ୍ରାଜେଡି ହେଲା ଭଲପାଇବା ।

ଡକ୍ଟର ମିତ୍ର କହିଥିଲେ, ତୁମେ ଆସ ଡାର୍ଲିଂ, ଆମେ ଏଠାରୁ ଚାଲିଯିବା । ହଠାତ୍ ଯେପରି ନଦୀର ବନ୍ଧ ଭାଙ୍ଗିଯାଇଥିଲା କଇଁ କଇଁ ହୋଇ କାନ୍ଦି ଉଠିଥିଲେ ମିସେସ୍ ମାଲହୋତ୍ରା । କହିଥିଲେ ତୁମେ ଚାଲିଯାଅ ଡକ୍ଟର । ମୋତେ ସମସ୍ତ କିଛିର ପ୍ରାୟଶ୍ଚିତ ଏଇ ମାଟିରେ କରିବାକୁ ଦିଅ । ସନ୍ତାନକୁ ଛାତି ଉପରେ ଚାପିଧରି ତୁମର ସତ୍ତାକୁ ଅନୁଭବ କରିବା ସଙ୍ଗେ ସଙ୍ଗେ କର୍ଣ୍ଣେଲଙ୍କ ଭଲ ପାଇବାଟାକୁ ମୁଁ ଆଜି ଅନୁଭବ କରେ ।

ଡ଼କ୍ଟର ମିତ୍ର ଧୀରେ ଧୀରେ ଘର ଭିତରୁ ଚାଲି ଆସିଥିଲେ । ପୁଣି ଥରେ ମିସେସ୍ ମାଲହୋତ୍ରାଙ୍କର ମଥାରେ ହାତ ରଖି କହିଥିଲେ, ଯଦି କେବେ ଦରକାର ମନେକର ତେବେ ମୋତେ ଖବର ଦେବ । ମୁଁ ନିଶ୍ଚୟ ଆସିବି ।

ମିସେସ୍ ମାଲହୋତ୍ରା ନିର୍ବାକ ହୋଇ ଚାହିଁଥିଲେ ଗୋଟାଏ ଆହତ ମନର ବିଦାୟ ପଥକୁ ।

ଶୋଭନା ସେବା ସଦନ ଭିତରେ ବସି ଡକ୍ଟର ମିତ୍ରଙ୍କ ଠାରୁ ଗଳ୍ପଟି ଶୁଣିବା ପରେ ପଚାରିଥିଲି, ତା'ପରେ ମିସେସ୍ ମିତ୍ରଙ୍କର କ'ଣ ହେଲା ।

କିଛିକ୍ଷଣ ନୀରବ ରହିଥିଲେ ଡକ୍ଟର ମିତ୍ର । ଲକ୍ଷ୍ୟ କରିଥିଲି ବୃଦ୍ଧ ବୟସରେ ମଧ ତାଙ୍କର ଆଖି ଛଳଛଳ ହୋଇ ଉଠିଥିଲା । ମୋତେ କହିଥିଲେ, ତା'ପର ଘଟଣା ଅତ୍ୟନ୍ତ ଯନ୍ତ୍ରଣାଦାୟକ ।

ଆଜକୁ ତିରିଶ ବର୍ଷତଳେ ଫେବୃୟାରୀ ତେଇଶ ତାରିଖରେ ଗୋଟିଏ ଟେଲିଗ୍ରାମ ପାଇଥିଲି ଏଲ୍‌ହାବାଦରୁ, ପଠାଇଥିଲେ ମିସେସ୍ ମାଲହୋତ୍ରା ।

ଲେଖିଥିଲେ, ମୋତେ ତାଙ୍କ ସହିତ ଫେବୃୟାରୀ ଛବିଶ ତାରିଖ ଠିକ୍ ସନ୍ଧ୍ୟା ଛଅଟାରେ ଦେଖା କରିବାପାଇଁ । ମୁଁ ମଧ ସେଦିନ ପହଞ୍ଚିଥିଲି । କିନ୍ତୁ ଘର ଖୋଜି ପାଇବାରେ ମୋର କିଛି ସମୟ ବିଳମ୍ବ ହୋଇ ଯାଇଥିଲା । ଘରେ ପଶି ଦେଖିଥିଲି ମିସେସ୍ ମାଲହୋତ୍ରା ତଳେ ଶୋଇ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି, ଆଉ ଗୋଟିଏ ପାଞ୍ଚବର୍ଷର ଶିଶୁ ତାଙ୍କରି ମୁହଁକୁ ଚାହିଁ ବେଳେବେଳେ କାନ୍ଦି ଉଠୁଛି ।

ଶିଶୁଟି ମୋତେ ଦେଖି ଦଉଡି ଆସି କହିଥିଲା - ବାପା ତୁମେ ଆସିଛ । ମୁଁ ସେତେବେଳେ ଲକ୍ଷ୍ୟ କରିଥିଲି ଏତେ ଯନ୍ତ୍ରଣା ଭିତରେ ମଧ ମିସେସ୍ ମାଲହୋତ୍ରାଙ୍କ ମୁହଁରେ ଟିକିଏ ହସର ଝଲକ ଖେଳିଯାଇଥିଲା । ମୁଁ ବସିପଡ଼ି ମିସେସ୍ ମାଲହୋତ୍ରାଙ୍କ ମଥାକୁ ମୋ କୋଳକୁ ଟେକି ନେଇଥିଲି କହିଥିଲି ତୁମେ ଏ କ'ଣ କଲ ଡାର୍ଲିଂ ।

ବହୁ କଷ୍ଟରେ ଟେବୁଲ ଉପରେ ଖଣ୍ଡିଏ ଚିଠି ଥିବାର କହି ଚିରଦିନ ଲାଗି ସେ ଆଖି ବୁଜି ଦେଇଥିଲେ ।

ଏତେ ଗୁଡ଼ାଏ କଥା କହିବା ପରେ ଡକ୍ଟର ମିତ୍ର ଟିକିଏ ଆଖି ବୁଜି ବସି ରହିଥିଲେ । ତା'ପରେ ଚେୟାର ଉପରୁ ଉଠିପଡି ଗୋଟିଏ କାଚ ଆଲମାରି ଖୋଲି ମୋତେ ଖଣ୍ଡିଏ ଚିଠି ଆଣି କହିଲେ ପଢ଼ନ୍ତୁ । ଚିଠି ଖଣ୍ଡିକ ପଢ଼ିଥିଲି । ଲେଖାଥିଲା-

ଡକ୍ଟର ମିତ୍ର ! ତୁମେ କହିଥିଲ ମୋର ଯଦି କେବେ ଦରକାର ପଡ଼େ ତୁମକୁ ଡାକେ ତେବେ ତୁମେ ଆସିବ, ଆଜି ତୁମକୁ ମୋର ଖୁବ୍ ଦରକାର । ତୁମ ସହିତ ବୋଧହୁଏ ଦେଖା ହେବ କି ନାହିଁ ଜାଣେନା । ତୁମେ ମୋତେ ତୁମ ପାଖକୁ ନେଇ ଯିବାକୁ ଚାହିଁଥିଲ । କିନ୍ତୁ କେଉଁ ପରିଚୟ ଦେଇ ତୁମ ପାଖେ ରହି ପାରିଥାଆନ୍ତି କହିଲ ? ମୋର ସନ୍ତାନକୁ ତୁମପରି ମଣିଷ କରି ଗଢ଼ିବ ବୋଲି ମୋର ବିଶ୍ୱାସ । ତାକୁ ତୁମରି ହାତରେ ଦେଇଗଲି ।

ତୁମର ଡାର୍ଲିଂ ।



